# ବାଣଦର୍ପଦଳନ ନାଟକ ॥



୬ ଶ୍ରୀଚନ୍ଦ୍ରନାଥ ନାରାୟଣ ଦେବଙ୍କ ଦ୍ୱାରା
ପ୍ରଣୀତ ॥

ଚତୁର୍ଥ ସଂସ୍କରଣ ॥

ଶ୍ରୀ ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ
ମହାରାଜାଙ୍କ ଦ୍ୱାରା
ପ୍ରକାଶିତ ॥



ଶ୍ରୀ ଗଜପତି ଯନ୍ତ୍ରାଳୟରେ
ବନମାଳି ପଟ୍ଟନାୟକଙ୍କ ଦ୍ୱାରା
ମୁଦ୍ରଣ ॥

ପାରଳାଖେମୁଣ୍ଡି ॥
1934

(ମୂଲ୍ୟ ଦୁଇଅଣା ମାତ୍ର)

Digitized by srujanika@gmail.com

# ନିବେଦନ ॥

ହରିବଂଶାନ୍ତର୍ଗତ ବାଣୋପାଖ୍ୟାନକୁ ଅବଲମ୍ବନ କରି ଏହି "ବାଣଦର୍ପଦଳନ" ନାଟକ ଲିଖିତ । ଏଥିରେ ରାବଣ କୃତ ଶିବତାଣ୍ଡବରୁ ଦୁଇଗୋଟି ଶ୍ଳୋକ ଏବଂ ଶ୍ରୀ ଗୁରୁଙ୍କନ୍ତ ଚେଲମସ୍ମା ଶାସ୍ତ୍ରୀଙ୍କ ବିରଚିତ ହରିହରସ୍ତବାଷ୍ଟକ ଉଦ୍ଧୃତ ହୋଇ ଅଛି । ନାଟିକାଟି ସ୍ଥାନୀୟ ରଙ୍ଗମଞ୍ଚରେ ଦୁଇଥର ଅଭିନୀତ ହୋଇଥିଲା । ବନ୍ଧୁମଣ୍ଡଳୀ ଅଭିନୟ ଦେଖି ଆନନ୍ଦ ପ୍ରକାଶ କରିଥିବାରୁ ମୁଁ ଏହାର ମୁଦ୍ରାଙ୍କନରେ ପ୍ରବୃତ୍ତ ହେଲି ।

ଶ୍ରୀ ପଦ୍ମନାଭ ନାରାୟଣ ଦେବ ।

Digitized by srujanika@gmail.com

# ମୁଖବନ୍ଧ ॥

ଉତ୍କଳର ନାନା ସ୍ଥାନସ୍ଥ ରଙ୍ଗାଳୟମାନଙ୍କରେ ଏହି "ବାଣଦର୍ପଦଳନ ନାଟକ" ଅଭିନୀତ ହେବାଦ୍ୱାରା ଦର୍ଶକ ମଣ୍ଡଳୀର ଆନନ୍ଦବର୍ଦ୍ଧନ କରିଥିବା ବିଷୟ ଅବଗତ ହୋଇ ନୂତନ ସଂସ୍କରଣ ପ୍ରକାଶ କରୁଅଛୁଁ ।

ପ୍ରାକୃତିକ ଉତ୍କଳର ଜନ ସାଧାରଣରେ ପୂର୍ବବତ୍ ଏହି ଆଦୃତ ହେଲେ ଶ୍ରମ ସଫଳ ମନେ କରିବୁଁ । ଇତି ।

ପାରଳାଖେମୁଣ୍ଡି
୧୫—୭—୧୯୩୮

ପ୍ରକାଶକ ।

Digitized by srujanika@gmail.com

## ଅଭିନୟୋଲ୍ଲିଖିତ ବ୍ୟକ୍ତିମାନେ ।

ପୁରୁଷଗଣ— ବ୍ରହ୍ମା, ମହାଦେବ, ଶ୍ରୀକୃଷ୍ଣ, ବଳରାମ, ନାରଦ, ଅନିରୁଦ୍ଧ, ଅକ୍ରୂର, ସାତ୍ୟକ, ବଭ୍ରୂଥୁ, ବାଣ, କୁମ୍ଭାଣ୍ଡ, ଘଣ୍ଟାକର୍ଣ୍ଣ, ଦୌବାରିକ ଇତ୍ୟାଦି ।

ସ୍ତ୍ରୀଗଣ— ପାର୍ବତୀ, ବାଣପତ୍ନୀ, ଊଷା, ଚନ୍ଦ୍ରଲେଖା, ଅପ୍ସରମାନେ ଓ ଦାସୀ ।

Digitized by srujanika@gmail.com

ନାନ୍ଦୀ ।

ରାଗ ଝିଞ୍ଜୋଟୀ । ଆଦିତାଳ ।

ଦେବ ଜନାର୍ଦ୍ଦନ । ଅସୀମ ପୂରଣ ।
କର କାଟିରେ ପ୍ରଭୁ ବିଶ୍ୱ-ପାଳନ ॥ ୦ ॥

ସର୍ବ ଲୋକ ପିତା । ସୁଖ ଶାନ୍ତି ଦାତା ।
ସକଳ ଘୋର-ବିଘ୍ନ-ତିମିର-ତପନ ॥ ୧ ॥

ପାପ ବିନାଶକ । ମୁକ୍ତି ପ୍ରଦାୟକ ।
ସୁର-ନର-କିନ୍ନର-ଦାନବ-ପାବନ ॥ ୨ ॥

ଅନନ୍ତ ଅପାର । କରୁଣା-ସାଗର ।
ସଦାନନ୍ଦ ମୂରତି ଭୁବନ ମୋହନ ॥ ୩ ॥

ସଙ୍କଟ ବାରଣ । ଅନାଦି କାରଣ ।
ତ୍ରିଭୁବନ ଈଶ୍ୱର ପାଷଣ୍ଡ ଦଳନ ॥ ୪ ॥



[ସୂତ୍ରଧାର ସଭାକୁ ଉଦ୍ଦେଶକରି ପୁଷ୍ପାଞ୍ଜଳୀ ବିକର୍ଣ୍ଣ କରିବା ଓ ପାରିପାର୍ଶ୍ୱିକମାନଙ୍କର ପ୍ରସ୍ଥାନ]

[ନାନ୍ଦ୍ୟାନ୍ତେ ସୂତ୍ରଧାର]

ସୂ— ଆଜ ଗୋଟିଏ ସୁଦିନ । ଏହି ରଙ୍ଗାଳୟରେ ନିଖିଳ ଗୁଣାଳଂକୃତ ଭଦ୍ରମଣ୍ଡଳୀକି ଦେଖି ଆମ୍ଭ ମନରେ ଯେଉଁ ଆନନ୍ଦଲହରୀ ଉଚ୍ଛଳିତ ହେଉଅଛି ତାହା ଆମ୍ଭର ଇତି ପୂର୍ବେ ଅନୁଭୂତ ହୋଇଥିଲାପରି ବୋଧ ହେଉ ନାହିଁ ।

Digitized by srujanika@gmail.com

ଏମାନଙ୍କ ସମ୍ମୁଖରେ କେଉଁ ନାଟକ ଅଭିନୟ କରି ଏମାନଙ୍କ ପ୍ରଶଂସାପାତ୍ର ହେବୁ ? [କିଛି କାଳ ବିଚାର କରି] ଆମ୍ଭେ କେତେପ୍ରକାର ବିଚାରକରି ଦେଖିଲେ ମଧ କୌଣସି ନାଟକର ଠିକଣା କରିପାରୁନାହୁଁ । ବୋଧ ହୁଏ ପ୍ରିୟାକୁ ଡାକି ଜିଜ୍ଞାସାକଲେ ଆମ୍ଭର ସନ୍ଦେହ ଦୂର ହୋଇପାରେ । [ନେପଥ୍ୟକୁ ଚାହିଁ] ପ୍ରିୟେ ! ତୁମ୍ଭର ବେଶଭୂଷା ସମାପନ ହୋଇଥିବ ପରା ଏ ଆଡେ ଥରେ ଆସ !

ନଟୀ—

ରାଗ ମାଳବ ॥ ଅଢତାଳ ॥

ପ୍ରାଣେଶ ମତେ କସ ପାଇଁ । ଡାକିଲ ମୁଁ ଜାଣୁନାହିଁ ॥
କି ଉଦ୍ଦେଶେ ଅଛି ଚିତ୍ତେ । ଅନୁମାନ ମୋର ହେଉନାହିଁ ॥
ପଡ଼ୁଛି ଏତେବ କି କାର୍ଯ୍ୟ ? । କହ ସତ୍ୱର ହେ ଆର୍ଯ୍ୟ ॥
ବଳୁଛି ମନେ ଅଭିଳାଷ । ମୋହର ଅଶେଷ ॥
ସଂଶୟ ଦୂର କରାଇ । ନାଥ ବଚ ସମଜାଇ ॥ ୧ ॥

କାହିଁକି ଏ ରଙ୍ଗଭୂମି । ମଣ୍ଡିଛ ଏପରି ସ୍ୱାମି ॥
କେଉଁ କାରଣେ ପଣ୍ଡିତମାନେ । ବସିଛନ୍ତି ମିଳି ଏହି ସ୍ଥାନେ ॥
ଅତି ମଧୁର ସ୍ୱରରେ ଗାନ । ଶୁଣାଇ ପୂରି ଲୟ ତାନ ॥
ଉତ୍କଳମନ୍ତ୍ର ଚନ୍ଦ୍ରପାଶ । ବଶଇ ହୃଦେଶ ॥
ବିପଞ୍ଚି ତାଳ ବଜାଇ । ଦେଉଛ ଚିତ୍ତ ଚମକାଇ ॥ ୨ ॥



ସୂ— ପ୍ରିୟେ ! ଆଉ କିଛି ନୁହେ । ଆଜ କେଉଁ ନାଟକ ଅଭିନୟ କରି ଏହି ସଭ୍ୟବୃନ୍ଦଙ୍କର ପ୍ରୀତି ଜନ୍ମାଇପାରିବୁ ଏହା କେତେ ବିଚାର କଲେ ମଧ ଆମ୍ଭ ମନରେ

Digitized by srujanika@gmail.com

ସ୍ଥିରକୃତ ହୋଇଛନ୍ତି ।  ଏଣୁ ତୁମ୍ଭର ପରାମର୍ଶ ନେବା
ଲାଗି ଡାକିଲୁଁ ।

ନ— ଆର୍ଯ୍ୟପୁତ୍ର ! ମୁଁ ଜଣେ ସ୍ତ୍ରୀର ଅବଳା ।  ମୁଁ ଆପଣଙ୍କୁ କି
ପରାମର୍ଶ ଦେଇପାରିବି ? ଆପଣ ଭଲରୂପେ ବିଚାର
ଯେପରି ଏ ଭଦ୍ରଲୋକେ ସନ୍ତୁଷ୍ଟହେବେ ସେପରି
ଗୋଟିଏ ନାଟକ ଅଭିନୟ କରନ୍ତୁ ।

ସୂ— ପ୍ରିୟେ ଅମ୍ଭେ ବହୁବାର କିଛି ନିଶ୍ଚୟ କରିପାରିଲୁନାହିଁ
ଏଣୁ ତୁମ୍ଭେ ଆମ୍ଭ ମନର ଆଶଙ୍କା ଦୂରକରିବ ବୋଲି
ତୁମ୍ଭଙ୍କୁ ଡାକିଲୁଁ ।  ମାତ୍ର ତୁମ୍ଭର କଥା ଶୁଣି ଆମ୍ଭ
ମନରେ ଅଧିକ ଆଶଙ୍କା ଜାତହେଉଛି ।

ନ—

ରାଗ ସାବେରି ।  ଅଦ୍ଧତାଳ ॥

ହେ ପ୍ରାଣେଶ୍ୱର ଶୁଣ ମୋ ବଚନ ।
କର ତୁମ୍ଭର ମାନସ ଦୂର ।
ସକଳ ଶଙ୍କା ଏବେ ଝଟତ ॥ ୦ ॥

ଏ ସଭାଜନେ ଯେପରି ହରଷ ।
ଲଭିବେ ସେପରି ନାଟକ ନାମ ।
କହୁଛି ଶୁଣ ହେ ପ୍ରାଣପତି ॥ ୧ ॥

ଶ୍ରୀ ପଦ୍ମନାଭ ଦେବ ବିରଚିତ ।
“ଚାଣଧରପଧଜନ” ନାଟକ ।
କରନ୍ତୁ ଅଭିନୟ ହେ ସୁମତି ॥ ୨ ॥

ଯାହା ଲୋଡ଼ିବ ସେ ସବୁ ମୁହିଁ ।
ଜାଗ୍ରତରେ ଅନତ ବଳରେମୁ ।
ଦେଖାଉଥିବ ତୁମ୍ଭର କତ ॥ ୩ ॥

Digitized by srujanika@gmail.com

ସୂ— ହଁ ! ଯଥାର୍ଥ କହୁଅଛ । "ଚାଣଯର୍ପଦଳନ" ନାଟକ ଅଭିନୟ କରି ଆମ୍ଭେମାନେ ଏହି ଭଦ୍ରଜନମାନଙ୍କର ପ୍ରୀତିଭଜନ ହୋଇପାରିବା । ଅଚ୍ଛା ! ତୁମ୍ଭେ ନେପଥ୍ୟକୁ ଯିବା ପୂର୍ବରେ ଶରତ୍ ଋତୁକୁ ଲକ୍ଷକରି ଗୋଟିଏ ଗୀତ ଗାନକର ।

ନ— ଯେ ଆଜ୍ଞା ।

ରାଗ ହାଟବସନ୍ତ ॥ ଅଦତାଳ ॥

ଦେଖ ଏ ସୁଖଦ ଶରତ୍-ଋତୁ କାଳ ।
ଦିଶଇ କି ଦିବ୍ୟ ଦିଗ ନିରମଳ ॥ ୦ ॥
ଭୂତଳ ଗରିମା । ଗିରି ନିର୍ଝରଣୀ ।
ଗର୍ଜି ହଦା ବହମାନ ।
କୂପ ସରୋବର । ସାଗର ଆକର ।
ପୂରିତ ହୋଇଣ ବାରି, ସମୀରଣ,
ତରଙ୍ଗିତ ପ୍ରଫୁଲ୍ଲ ॥ ୧ ॥

ପ୍ରଫୁଟି କାଶ କମଳ । ସୁଗନ୍ଧ ଉତ୍ପଳ ।
ଶେଫାଳିକା କୁରୁବକ ।
କଦମ୍ବ କୁସୁମ । କହ୍ଲାର ବନ୍ଧୁକ ।
ବୃନ୍ତ ଧରନ୍ତି ଷଟପଦ । ମଧୁପାନେ ।
ମାତିଛନ୍ତି ଅଳିକାଳ ॥ ୨ ॥

ବିମଳ ରଜନୀଶ । ଉଜ୍ଜ୍ୱଳ ଆକାଶ ।
ତାରାବଳୀ ଶୋଭଦେଶ ।
ମୟୂର ନାଚଇ । ସାରସ ଉଡ଼ଇ ।
ମନୋହରେ ବନ ଦେଶେ । ଖେଳୁଛନ୍ତି
ମଲ୍ଲୀ ସଙ୍ଗେ ମରାଳ ॥ ୩ ॥

Digitized by srujanika@gmail.com

ସୂ— ପ୍ରିୟେ ! ତୁମ୍ଭର ମଧୁରଗାନ ଶୁଣି ଆମ୍ଭେ ବିମୁଗ୍ଧ ହୋଇ ଅଛୁ । ଶୀଘ୍ରେ ଯାଇ ନେପଥ୍ୟରେ ସକଳ ବିଷୟ ଜାଗ୍ରତ କରଦିଅ ।

ନ— ଯେ ଆଜ୍ଞା ।

ସୂ— ପ୍ରିୟେ ! ହେଉଟି ମହାଦେବ ପାର୍ବତୀଙ୍କ ସହିତ ଅପ୍ସର ମାନଙ୍କ ନୃତ୍ୟ ଦେଖୁଛନ୍ତି । ଚାଲ ଶୀଘ୍ର ଯିବା ।

[ପ୍ରସ୍ଥାନ]



## ପ୍ରଥମାଙ୍କ ।

### ପ୍ରଥମ ଦୃଶ୍ୟ ।

[କୈଳାଶ]

[ଶିବ ପାର୍ବତୀ ଉପବେଶନ; ନନ୍ଦୀ ଭୃଙ୍ଗୀ ସମୀପେ ଦଣ୍ଡାୟମାନ ଓ ଅପ୍ସରମାନଙ୍କ ନୃତ୍ୟ]

ପା— ମହାରାଜ ! ଅପ୍ସରମାନଙ୍କ ନୃତ୍ୟ ଦେଖି ମୁଁ ବଡ ଅହ୍ଲାଦିତ ହେଉଅଛି ।

ଶି— ପ୍ରିୟେ ! ଏମାନଙ୍କ ନୃତ୍ୟ ଦେଖି କାହାର ମନରେ ଅହ୍ଲାଦ ଜନ୍ମିନପାରେ ? ଏମାନଙ୍କ ହୃଦୟଗ୍ରାହୀ ଅଭିନୟ, ମନମୁଗ୍ଧକର ଏବଂ ତାନମାନପରିପୂର୍ଣ୍ଣ ମଧୁର ତାନରେ ପାଷାଣବତ୍ ହୃଦୟ ମଧ୍ୟ ତରଳ ଯାଇପାରେ

Digitized by srujanika@gmail.com

ପା— ଆଜ୍ଞା ବାସ୍ତବ ।

ଶି— ରେ ସେବକ ?

ଭୃ— ଆଜ୍ଞା ।

ଶି— ଅପ୍ସରମାନଙ୍କୁ ଏଥର ଯିବାକୁ କହିଦେ ।

ଭୃ— ହେ ଅଜ୍ଞା! [ଅପ୍ସରମାନଙ୍କ ପ୍ରତି] ଅପ୍ସରମାନେ ! ତୁମ୍ଭେ ଯାଅ । [ନମସ୍କାରକରି ପ୍ରସ୍ଥାନ]

[ବାଣାସୁରର ପ୍ରବେଶ ଓ କରଯୋଡି ସ୍ତୁତିପଠନ]

[ଭୁଜଙ୍ଗପ୍ରୟାତ ବୃତ୍ତ]

ବା— "ଜଟାକଟାହସଂଭ୍ରମଭ୍ରମନ୍ନିଲିମ୍ପନିର୍ଝରୀ ।
ବିଲୋଲବୀଚିବଲ୍ଲରୀବିରାଜମାନମୂର୍ଦ୍ଧନି ।
ଧଗଦ୍ଧଗଦ୍ଧଗଜ୍ଜ୍ୱଲଲ୍ଲଲାଟପଟ୍ଟପାବକେ"
"କିଶୋରଚନ୍ଦ୍ରଶେଖରେ ରତିଃପ୍ରତିକ୍ଷଣଂମମ ।
ନମାମି ପାର୍ବତୀପତିଂ ନମାମି ଜାହ୍ନବୀପତିଂ ।
ନମାମି ଭକ୍ତବତ୍ସଳଂ ନମାମି ଭକ୍ତଲୋଚନଂ ।
ନମାମି ଚନ୍ଦ୍ରଶେଖରଂ ନମାମି ଦୁଃଖମୋଚନଂ ।
ହୃଦୀୟପାଦପଙ୍କଜଂ ସ୍ମରାମ୍ୟହଂନଟେଶ୍ୱର" ।

[ଶିବପାର୍ବତୀଙ୍କି ନମସ୍କାରକରିବା]

ଶି— କଲ୍ୟାଣ କଲ୍ୟାଣ ! ବତ୍ସ ! ତୁ କହେରୁ ଏଠାକୁ ଆସିଲୁ ?

ବା— ଦେବାଧି ଦେବ ! ଆଜକୁ ଅନେକ ବର୍ଷହେଲା ମୁଁ କାହାର ସଙ୍ଗେ ଯୁଦ୍ଧ କରିପାରିନାହିଁ । ଭବଦୀୟ ବରପ୍ରସାଦରୁ ମୁଁ ସହସ୍ରବାହୁ ବଳଶାଳୀ ହୋଇବାର ଜାଣି ଶୁଣି ଇନ୍ଦ୍ର, ଚନ୍ଦ୍ର, ଦେବ, ମାନବ ସମସ୍ତେ ଭୀତ ହୋଇ ଚକିତ ମୋ ସଙ୍ଗେ ଯୁଦ୍ଧକରିବାକୁ ଅସ୍ୱୀକାରନ୍ତି ଏଣୁ ଚରଣାରବିନ୍ଦରେ ନିବେଦନ ଏହି ଯେ ଏହି

Digitized by srujanika@gmail.com

ରଣରଙ୍କ ଦାସର ସଙ୍ଗେ ଯୁଦ୍ଧ କରିବାଲାଗି କୌଣସି ବୀରପୁରୁଷଙ୍କୁ ଆଜ୍ଞାହେଉ ।

ଶି— ଆଚ୍ଛା ! ଯଦି ଯୁଦ୍ଧକରିବାକୁ ତୋହର ଏତେ ଇଚ୍ଛାହେଲା ତେବେ ହେଉ । ଅଳ୍ପଦିନ ଭିତରେ ଜଣେ ବୀରପୁରୁଷ ତୋ ସଙ୍ଗେ ଯୁଦ୍ଧକରିବାକୁ ଆସିବ । ଜାଣିଥା ଯେଉଁ ଦିନ ତୋହର କୁମାରଦଣ୍ଡ ଶିଖିଧ୍ୱଜ ଭଗ୍ନହେବ, ସେହି ଦିନ ସେ ବୀରପୁରୁଷ ଆସି ପହଞ୍ଚିବ । ତୁ ବର୍ତ୍ତମାନ ନିଜ ଭବନକୁ ଯାଅ ।

ବା— ଯେ ଆଜ୍ଞା । [ଚମତ୍କାରଙ୍କର ପ୍ରସ୍ଥାନ]

[ଯବନିକାପତନ]

---

ଦ୍ୱିତୀୟ ଦୃଶ୍ୟ ।

[ଉଷା ଓ ଚନ୍ଦ୍ରଲେଖା ଉପବେଶନ]

ଉ— ସଖି ! ଆଜକୁ କେତେଦିନ ହେଲା ମୋ ମନଟା ନିରନ୍ତର ବଡ ଆକୁଳିତ ହୁଏ ।

ଚ— କାହିଁକି ସଖି ?

ଉ କାହିଁକି ମତେ କିଛି ଜଣାଯାଉନାହିଁ ସଖି !

ଚ— ସଖି ! ତୁମ୍ଭେ ମୋଠାରେ କପଟ କରୁଅଛ ?

ଉ— ନା ସଖି ମୋ ରାଣ । ମୁଁ କିଛି ବୁଝିପାରୁନାହିଁ ।

ଚ— ସଖି ! କେ ଶୁଣିଲେ ହସିବେ । ଯାହାର ମନକଥା ପୁଣି ତାହାକୁ ଜଣା ପଡୁନାହିଁ ।

ଉ— ନା ସଖି ମୁଁ ମିଛ କହୁନାହିଁ ।

ଚ — ମୁଁ ଜାଣିଲି ଯେ ।

ଉ— କଣ ଜାଣିଲ ସଖି ?

Digitized by srujanika@gmail.com

ଚ— ମୁ କହିପାରିବିନାହିଁ ।
ଉ— ମୋ ରାଣ ସଖି କିସ ଜାଣିଲ ?
ଚ— ତୁମ୍ଭ ମନର କଥା ତୁମ୍ଭେ ନକହିଲେ ମୋ ମନର କଥା ମୁ କାହିଁକି କହିବି ?
ଉ— ମୁ ସତ କହୁଛି ସଖି । ମୋ ମନରେ କଅଣ ଏପରି ହେଉଛି ମୁ ଜାଣିପାରୁନାହିଁ ।
ଚ— ସଖି ମୁ ସତ କହୁଛି । ମୋ ମନରେ କି କଥା ଅଛି ତାହା ମୁ ମଧ୍ୟ ଜାଣିପାରୁନାହିଁ ।
ଉ— ମୋରାଣ ! କହିଲ ! କହିଲ !

ଚ— ରାଗ ଧାରେଶ୍ୱରୀ ॥ ଆଦିତାଳ ॥

ପ୍ରାଣ ସଙ୍ଗିନି । ବାଇ ହେଲ କି ତୁମ୍ଭେ ସତେ ?
ତୁମ୍ଭ ମନରେ ରହି- । ଥିବା କଥା କପରି ।
ପରର ଜଣା ମତେ ? ॥ ୧ ॥

ଝାପରି କରି ସିନା । ବୋଲି ଦେଲି ବଚନା ।
ଧରି ବସିଛ କେତେ ॥ ୨ ॥

କେ ଶୁଣିଲେ ହସିବେ । କର ତାଳି ମାରିବେ ।
ଆତୁର କେବଣ ଏତେ ? ॥ ୩ ॥

—••※••—

ଉ— ନା ସଖି ! ତୁମ୍ଭେ ଅବଶ୍ୟ ମୋ ମନର କଥା ଅନୁମାନ କରିଅଛ । ନକହିଲେ ମୁ ଛାଡିବିନାହିଁ ।
ଚ— ଛାଡିବ ନାହିଁ ?
ଉ— ନା ।

Digitized by srujanika@gmail.com

ଚ— ତେବେ ଶୁଣ ।

ଉ— କହ ସଖି ।

ଚ— ଆପଣାର ବିବାହକଥାଲାଗି ତୁମ୍ଭେ ମନରେ ବ୍ୟଥିତା ହେଉଅଛ । ସତ ନା ମିଛ ?

[ଉଷା ଲଜ୍ଜାରେ ନତମସ୍ତକା ହେବା]

ଚ — ସେକଥାର ଲାଜ କାହିଁକି ?

ଉ— [ନତମସ୍ତକା]

ଚ— ସଖି ! ଏ ଶୁଭକର୍ମ ସକାଶେ ଏତେ ଆକୁଳ କାହିଁକି ? ଏତେ ଲଜ୍ଜା କାହିଁକି ? ଯଦି ତୁମ୍ଭେ ନିଜ କୁଳଦେବୀ ପାର୍ବତୀଙ୍କଠାରେ ପ୍ରାର୍ଥନା କରିବ ତେବେ ସେ ତୁମ୍ଭର ବିବାହ ଅଳ୍ପକାଳରେ କରାଇଦେବେ । ତାହାଙ୍କ ଓ ମହାଦେବଙ୍କ ପ୍ରସାଦରୁ ତବ ତୁମ୍ଭ ପିତା ଏତେ ପରାକ୍ରମୀ ? ତୁମ୍ଭେ କାହିଁକି ଚିନ୍ତାକର ? ଚଲ ଯିବା ତାହାର ଉପାୟ କରିବ ।

[ପ୍ରସ୍ଥାନ ଓ ଯବନିକାପତନ]



ତୃତୀୟ ଦୃଶ୍ୟ ।

[କୈଳାସନିକଟସ୍ଥ ଉପବନ]

ଉ— (ସ୍ୱଗତ) ଚିତ୍ରଲେଖାଙ୍କ ଉପଦେଶ ଶୁଣି ଜଗଜ୍ଜନନୀ ପାର୍ବତୀଙ୍କି ପ୍ରାର୍ଥନା କରିବା ସକାଶେ ଏହି ଶାନ୍ତିମୟ ଉପବନରେ ଆସି ପହଞ୍ଚିଲି । ପ୍ରାର୍ଥନା କଲେ ସେ ପ୍ରସନ୍ନା ହେବେ । ଏଥିରେ କିଛି ସନ୍ଦେହ ନାହିଁ । ମାତ୍ର କିପରିକାରି ତାହାଙ୍କ ସ୍ତୁତିରେ ଜଣାଇବି ? ମୁଁ ଜାଣି-

Digitized by srujanika@gmail.com

ପୀ ତୁମାନ୍ଙ୍କ । (କରୁଣକାନ୍ତରକ) ହଁ ! ହେତ ଅନ୍ତର୍ଯ୍ୟାମିନୀ
ମୋର ମନରକଥା ମାତ୍ର ବୁଝିପାରବେ ନାହିଁ କ ?
(ସ୍ମରଣା କରବା)

ରାଗ ଧନାଶ୍ରୀ । ଅଦତାଳ ।

ଅମ୍ବିକେ । ବରଦେ । ବରଦେ । ଶ୍ରୀ ଚଣ୍ଡିକେ ।
ସୁଖଦେ । ଶୁଭଦେ ଶ୍ରପଦ ଚାରଣି ।
କପର୍ଦ୍ଦିନ । ନଖିଳ ଜଗତ କାରଣି ॥ ୦ ॥

ଗୁଣଧାନ । ଦୁରୂତ ନାଶିନ । ଭୁବନ ମୋହନ ।
ଶ୍ରପଦ ଚାରଣି । କପର୍ଦ୍ଦିନ । ନଖିଳ ଜଗତ କାରଣି ॥ ୧ ॥

ଶଙ୍କରଦ୍ଧେ । ପଙ୍କଜାକ୍ଷି । ଶଙ୍କରଙ୍କ ଅଙ୍କ ଶୋଭିନୀ ।
ଗିରି ତନୟେ । ଅୟି ଜେନ୍ୟେ ପତିତ ପାବନ ।
ଶ୍ରପଦ ଚାରଣି । କପର୍ଦ୍ଦିନ । ନଖିଳ ଜଗତ କାରଣି ॥ ୨ ॥

ଭବ ତରଣି । ଦ୍ୱେ ଜନନ । ଶରଣ ପାଳନ ।
ଦୁଃଖନକର । ମୋଚନ କର । ମୋର ମା । ହେଉମା ।
ପରମା । ପରମ ମୋକ୍ଷଦାୟିନ ।
ଶ୍ରପଦ ଚାରଣି । କପର୍ଦ୍ଦିନ । ନଖିଳ ଜଗତ କାରଣି ॥ ୩ ॥



[ପାର୍ବତୀଙ୍କ ଆବିର୍ଭାବ]

ଉ— ମାତଃ ! ନମସ୍କାର ।

ପା— ତୁମ୍ଭର ମଙ୍ଗଳ ହେଉ । ସଜନନେନ ଉଷେ ! ତୁମ୍ଭେ
ମତେ କାହିଁକ ସ୍ମରଣାକଲ ?

ଉ—ମାତଃ ଆପଣ ଅନ୍ତର୍ଯ୍ୟାମିନୀ ଅଟ । ମୁ ସ୍ୱପ୍ନରେ କଣ

Digitized by srujanika@gmail.com

ଜଣାକରବ ? [ନତମସ୍ତକା]

ପା— ଉଷେ ! ଲଜ୍ଜା କାହିଁକି ? ମୁ ତୁମ୍ଭର ମନୋଗତକଥା ବୁଝିପାରୁଅଛି । କିନ୍ତୁ ଚିନ୍ତାକରନାହିଁ । ଅଳ୍ପଦିନରେ ଅନୁରୂପ ପାତ୍ର ପ୍ରାପ୍ତହୋଇ ସୁଖରେ କାଳହରଣକରିବ ତୁମ୍ଭେ ଶୟନକରିଥିବା ସମୟରେ ଯେଉଁ ବୀରପୁରୁଷଙ୍କୁ ସ୍ୱପ୍ନରେ ଦେଖିବ ସେ ତୁମ୍ଭର ପତି ହେବେ । ଏହା ମାତ୍ର ମନେ ରଖିଥାଅ । ବର୍ତ୍ତମାନ ଯାଅ କିନ୍ତୁ ଚିନ୍ତା କରନାହିଁ ।

ଉ— ଯେ ଆଜ୍ଞା ! [ପାର୍ବତୀଙ୍କ ଅନ୍ତର୍ଦ୍ଧାନ ଓ ଚିତ୍ରଲେଖାର ପ୍ରବେଶ]

ଚି— ସଖି ଉଷେ ! କଣ ମନୋରଥ ସିଦ୍ଧହେଲା ?

ଉ— [ଲଜ୍ଜାରେ] ସଖି—

ଚି— ମୁଁ ବଳ ସବୁ ଜଣା ଗଲାନି । ଲଜ୍ଜା କାହିଁକି ? ତେବେ ପାର୍ବତୀ କଣ ଆଜ୍ଞା ଦେଲେ ?

ଉ— ସଖି ! ସେ କହିଲେ ତୁମ୍ଭର ଶୟନ ସମୟରେ ସ୍ୱପ୍ନରେ ଯେଉଁ ବୀରପୁରୁଷଙ୍କୁ ଦେଖିବ ସେ ତୁମ୍ଭର ପତି ହେବେ

ଚି— ତେବେ ତୁମ୍ଭ ମନୋରଥ ସିଦ୍ଧହେଲା ।

(ପ୍ରସ୍ଥାନ ଓ ଯବନିକାପତନ)



Digitized by srujanika@gmail.com

# ଦ୍ୱିତୀୟାଙ୍କ ॥

[ପ୍ରଥମଦୃଶ୍ୟ]

[ବାଣ ସିଂହାସନୋପରି ଉପବେଶନ । ପାର୍ଶ୍ୱେ କୁମ୍ଭାଣ୍ଡ ଓ ଘଣ୍ଟାକର୍ଣ୍ଣ ଉପବେଶନ]

ବା— ହେବ ଶ୍ରେଷ୍ଠ କୁମ୍ଭାଣ୍ଡ ! ଦୈତ୍ୟକୁଳ ହିତାକାଂକ୍ଷୀ ଦେବାଧି ଦେବ ଶୂଳପାଣି ଅଳ୍ପ ଦିନହେଲା ଆମ୍ଭଙ୍କୁ ଯେ ଅନୁକୂଳ ବର ପ୍ରଦାନ କରିଅଛନ୍ତି ତାହା ତୁମ୍ଭଙ୍କୁ ଜଣା ?

କୁ— ଦାନବେନ୍ଦ୍ର ! ମହାଦେବଙ୍କ କୃପାରୁ ଆପଣ ତ୍ରିଲୋକ ବିଜୟୀ ହୋଇଅଛନ୍ତି । ପୁଣି ତାଙ୍କଠାରୁ ଆଉ କି ବର ପାଇଅଛନ୍ତି ?

ବା— ଅମାତ୍ୟ ପୁଙ୍ଗବ ! ଅନେକ ଦିନାବଧି କାହାରିସଙ୍ଗେ ଯୁଦ୍ଧ ନକରି ବଡ ଉତ୍କଣ୍ଠିତ ହୋଇଥିଲୁଁ । ତେଣୁ ଏଥି ଆନ୍ତରେ ଶଙ୍କରଙ୍କ ଶ୍ରୀମୁଖର ନିବେଦନ କରିବାରୁ ସେ କହିଁତ ହାସ ପ୍ରକାଶକରି କହିଲେ "ଅଳ୍ପ ଦିନରେ ତୋହର ମନୋରଥ ସିଦ୍ଧ ହେବ ! ଯେବେ ତୋହର କୁମାରଦତ୍ତ ମୟୂରଧ୍ୱଜ ଭଗ୍ନହୋଇ ପଡିବ ତେବେ ତୋହର ସମକକ୍ଷ ଜଣେ ଯୋଦ୍ଧା ଅସି ତୋହର ରଣ-ପିପାସା ଶାନ୍ତ କରିବ" ଅମାତ୍ୟ ଶ୍ରେଷ୍ଠ ! ମହାଦେବଙ୍କଠାରୁ ଏହି ବର ଲାଭକରି ପରମାନନ୍ଦ ପ୍ରାପ୍ତି ହୋଇଅଛୁ

ଘ— ଦାନବେନ୍ଦ୍ର ! କ୍ଷମାକରନ୍ତୁ । ଶ୍ରୀମୁଖ ତ୍ରିଭୁବନ ବିଜୟୀ ଅଟନ୍ତି । କୋଉଠି ଇନ୍ଦ୍ର ଆପଣଙ୍କ ଭୟରେ ସର୍ବଦା ତ୍ରସ୍ତ । ଦିକପାଳଗଣ ଭୃତ୍ୟପରି ଶ୍ରୀମୁଖଙ୍କ ଆଜ୍ଞା ପରିପାଳନରେ ନିରତ ଅଛନ୍ତି । ଶ୍ରୀମୁଖ ଏଠାରେ ବିରାଜମାନକରି ଅମରାବତୀର ସୁଖ ଭୋଗକରନ୍ତୁ ।

Digitized by srujanika@gmail.com

ଏପରିସ୍ଥଳେ କାପୁରୁ ଏ ରଣକ୍ଷେତ୍ର ଉପସ୍ଥିତ ହୋଇଅଛି
ସୁଦର୍ଶନ ପାଦରେ । ବିଧାତା ଆମ୍ଭ ଉଭୟ କୁଳକୁ ଏ.ତ
ଦୈନ୍ୟଦଶାକୁ ନିର୍ଦ୍ଦିଷ୍ଟ କରିଅଛନ୍ତି ଯେ ସେମାନେ ଏହି
ସୁକୀର୍ତ୍ତି ମଧ୍ୟ ସ୍ଥିରଭାବରେ ରହିପାରନ୍ତି ନାହିଁ ।

ବା:—ପଣ୍ଡାକର୍ଣ୍ଣ ! ତୁମ୍ଭେ ବୃଦ୍ଧ । ତୁମ୍ଭର ସକଳ ଇନ୍ଦ୍ରିୟ ଅବଶ
ଶରୀର ଶିଥିଳ । ପୂର୍ବର ତେଜ ବଳ ସବୁ ଗଲାଣି ।
ସୁତରାଂ ଶାନ୍ତଦେବୀଙ୍କ କୋଳରେ ବିଶ୍ରାମ ନେବାକୁ
ତୁମ୍ଭେ ବ୍ୟସ୍ତ । ଉତ୍ତମ ମନେ କାପୁରୁଷ ଓ ଅଳସବ୍ୟକ୍ତି
ମାନଙ୍କପକ୍ଷ କଦାପି କାଳହରଣ କରନ୍ତୁନାହିଁ, କାର୍ଯ୍ୟ
ମାତ୍ର ସେମାନଙ୍କ ଜୀବିକା । ଏହି ପରିବର୍ତ୍ତନଶୀଳ
ଜଗତରେ ସମସ୍ତେ ଯଶ ଗୌରବ ଅର୍ଜିବାକୁ ଯତ୍ନ
କରୁଥାନ୍ତି । ଏପରି କରିବା କି ତୁମ୍ଭ ମତରେ ଅବୈଧ ?
[କୁମ୍ଭାଣ୍ଡପ୍ରତି] କି ମନ୍ତ୍ରୀନ୍ କୁମ୍ଭାଣ୍ଡ ! ଯୁଦ୍ଧକର ଯଶ
ଲାଭ କରିବା କି ଅବୈଧ ଅଟେ ?

କୁ—ଆଜ୍ଞା ନା ! ନିଶ୍ଚେଷ୍ଟବ୍ୟକ୍ତି ଅତିବ ଅକର୍ମଣ୍ୟ । ସେ
ଆପଣାର ଉନ୍ନତିପଥକୁ ନିଜେ କଣ୍ଟକାକୀର୍ଣ୍ଣକରେ
ସୁତରାଂ ତାହାର କୌଣସିକାଳେ ଶ୍ରୀବୃଦ୍ଧିର ସମ୍ଭାବନା
ନାହିଁ । କିନ୍ତୁ ଦୈତ୍ୟେନ୍ଦ୍ର ! ମହାଦେବ ସ୍ୱୟଂ ଯେଉଁ
ବର ପ୍ରଦାନ କରିଅଛନ୍ତି ତାହା ଲକ୍ଷ୍ୟ ଦେଇଲେ କିଛି
ସନ୍ଦେହ ଜାତହୁଏ ।

ବା—କାହିଁକି ସନ୍ଦେହ ? ଦେବାଧି ଦେବଙ୍କ ବରରେ
ସନ୍ଦେହକର କଥା କଣ ? ଅମଙ୍ଗଳ ଆଶଙ୍କା କର ନା ?
ଭଗବାନ ତ୍ରୈଲୋକନାଥ ଯାହାର ପିତା, ଭଗବାନ
କାର୍ତ୍ତିକେୟ ଯାହାର ଭ୍ରାତା ଏବଂ ଆଦ୍ୟଶକ୍ତି ଭଗବତୀ
ଯାହାର ଜନନୀ ତାହାର କି କେବେ ଅମଙ୍ଗଳ ଘଟିପାରେ?

Digitized by srujanika@gmail.com

ଏ ବୃଥା ସନ୍ଦେହ, ବୃଥା ଆଶଙ୍କା । ସେ ଯାହା ହେଉ ତୁମ୍ଭେ ଶୀଘ୍ର ଯାଇ ଚଉପରଖାମାନ ଉତ୍ତମରୂପେ ଜଗି ରହିଥିବା ନିମନ୍ତେ ସେନାପତିଙ୍କି ଆଦେଶ ଦେଇ ଆସ, ଆମ୍ଭେ ଅନ୍ତଃପୁରକୁ ଯାଉଁ । (ଉଠିବା)

କୁ— ଯେ ଆଜ୍ଞା ।

(ପ୍ରସ୍ଥାନ ଓ ଯବନିକା ପତନ)

---

## ଦ୍ୱିତୀୟ ଦୃଶ୍ୟ ।

(ଉଷା ଓ ଚନ୍ଦ୍ରଲେଖା)

ଉ— ସଖି ! ଏ ସଂସାରରେ ସ୍ତ୍ରୀଜନ୍ମପରି ହୀନଜନ୍ମ କିଛିନାହିଁ ?

ଚ— ଆଜି ଏତେ ବିରକ୍ତ କାହିଁକି ସଖି ?

ଉ— ନା ସଖି ମୁଁ ବିରକ୍ତ ହେଉନାହିଁ । ତୁମ୍ଭେ ବିଚାର କର ଜନ୍ମଠାରୁ ମରଣପର୍ଯ୍ୟନ୍ତେ ପରାଧୀନା ହୋଇ ରହିବା କି ସୁଖଦାୟକ ଅଟେ ?

ଚ—କଅଣ ପୁରୁଷମାନଙ୍କପରି ସ୍ୱେଚ୍ଛାରେ ଥିବାକୁ ଇଚ୍ଛାକରନା?

ଉ—ନା ସଖି ? କେବଳ ପରାଧୀନା ହୋଇ ରହିବା ଯେପରି ଅନୁଚିତ କେବଳ ସ୍ୱେଚ୍ଛାଚାରିଣୀ ହେବା ମଧ୍ଯ ସେପରି ଅନୁଚିତ ।

ଚ— ତେବେ ଅର୍ଦ୍ଧାଙ୍ଗୀ ହେବାକୁ ଇଚ୍ଛା ତବ ?

ଉ— ତୁନିହୁଅ ସଖି ! ତୁମ୍ଭଙ୍କୁ ସବୁ କଥା ହାସ୍ୟ ହୋଇଛି ।

ଚ— ହାସ୍ୟ ନ କରି କଅଣ କରିବି ? କାହାକୁ କହିବା କଥା ତୁମ୍ଭଙ୍କୁ କାହିଁକି ? ଅଛି କିଛି ବୟସ କାହିଁପରି । ଏହି କଥା ହେବାକୁ ଏତେ ଦିନପର୍ଯ୍ୟନ୍ତେ ଡେରି ହେଉଥିଲା?

Digitized by srujanika@gmail.com

ଉ— ସଖି ଏବେ କେତେ ରାତି ହେବ ?
ଚ— ପ୍ରାୟ ବାରଟା ସମୟ ।
ଉ— ତେବେ ଶୟନ କରିବା ସମୟ ହେଲାଣି ।
ଚ— ହେଲାଣି ତ ଚାଲନ୍ତୁ ?
ଉ— ତେବେ ମୁଁ ଶୟନାଗାରକୁ ଯାଏ (ପ୍ରସ୍ଥାନ)
ଚ—(ସ୍ୱଗତ) ଅବଶ୍ୟ ଆପଣାର ଚିନ୍ତା ଚିତ୍ତରୁ ଯେବେ ଏ ଏତେ କଥା କହୁଅଛନ୍ତି । କୋଉଁଠିଲେ କି ନିରନ୍ତର ସ୍ତ୍ରୀନିନ୍ଦା ଓ ପୁରୁଷସ୍ତୁତି କରି ବସିଥାନ୍ତେ ? ସାଙ୍ଗଙ୍କଠାରୁ ବରପାଇ ମଧ୍ୟ ଏହାଙ୍କର ଅରୁଚିତା ଜଣା ହୋଇନାହିଁ । ହେଉ ବର୍ତ୍ତମାନ ଏ ଶୟନାଗାରରେ କଣ କରୁଥିବେ ଦେଖିବା । [ପ୍ରସ୍ଥାନ]

[ଉଷା ପର୍ଯ୍ୟଙ୍କୋପରି ଶୟନା ଓ ଚିତ୍ରଲେଖା କିଛିଦୂରରେ ଦଣ୍ଡାୟମାନା]

ଉ—[ସ୍ୱପ୍ନରେ] ଏକି ? ଏକି ? ମହାଶୟ ଦୂରହୁଅ ! ଦୂର ହୁଅ ! ମହାରାଜ—
ଚ—[ସ୍ୱଗତ] ହଁ ମୁଁ ଯାହା ଅନୁମାନ କରୁଥିଲି ତାହା ଯଥାର୍ଥ ।
ଉ—[ସ୍ୱପ୍ନରେ] ମହାରାଜ ! କେ ଦେଖିଲେ କଣ କହିବେ ? ଦୂରହୁଅନ୍ତୁ ।
ଚ—[ନିକଟକୁ ଯାଇ] ସଖି ! ସଖି !
ଉ—[ଚମକି ଉଠି] ତୁମ୍ଭେ କି ସଖି ?
ଚ— ହଁ ମୁଁ ସିନା ! ତୁମ୍ଭେ କି ସ୍ୱପ୍ନ ଦେଖିଲ ?
ଉ— ହଁ ସଖି ।
ଚ— ସ୍ୱପ୍ନ ଦେଖି ଏତେ କାତର ?
ଉ— କେଜାଣିକି ସଖି ମୋମନ ବଡ ଆକୁଳିତ ହୋଇଯାଉଅଛି
ଚ— ତେବେ କଣ ବୋଲି ସ୍ୱପ୍ନ ଦେଖିଲ ?

Digitized by srujanika@gmail.com

ଉ— କିନ୍ତୁ ମନେ ନାହିଁ ସଖି ?
ଚ— ମୋଠାରେ କପଟ କାହିଁକି ?
ଉ— କିନ୍ତୁ ନାହିଁ ସଖି ।
ଚ— ମ ସ୍ୱପ୍ନକଥା କହିବାକୁ ତ ଏପରି ସଙ୍କୋଚ ହେଲେ ଆଉ କହନ୍ତି?
ଉ— ସଖି —
ଚ— ଭଲ କାହିଁକି ସଖି? ସେଠାରେ କହିବାକୁ ଅଭ୍ୟନ୍ତରକି?

ଉ— ରାଗ ବିହାଗ । ରୂପକ ତାଳ ।

ସ୍ୱପ୍ନେ ସଖି ସପନେ ଯା ଦେଖିଲି ମୁହିଁ ।
ତା କହି ନୁହଇ ।୦।

ହରଷ ହୋଇ କେହ ଜଣେ ଆସି ପଛୀରେ ।
ମୋର ପାଖରେ ବସିଲେ ଭୁଜ କରି ଦେଇ ।୧।

ହସରେ ମନ ହରି ସୁଲୋଚନ କହି ।
ଚିତ୍ତେ ମୋ ଚୁମ୍ବିଲେ କେତେ ଭଙ୍ଗୀ ଦେଖାଇ ।୨।

କହୁନପାରେ ଲାଜ ରତ ନାହିଁ ତାଙ୍କରେ ।
ମୋହରେ ମତ୍ତହେଲେ ମଦନଗରେ ହୋଇ ।୩।

କାନରେ 'ପ୍ରିୟତମ' ବୋଲିଦେଲି ଲାଜରେ ।
ଜାଗ୍ରତ ହେଲେ କି ତରତରେ କେଉଁଣେ ଯାଇ ।୪।



[ନେହ ଚିତ୍ରାରେ ବସିବା]

ଚ— ସଖି ! ତେବେ ଏତେ ଚିନ୍ତା କାହିଁକି ? ସ୍ୱପ୍ନରେ ତୁମେ ଯେଉଁ ପୁରୁଷକୁ ଦେଖିଛ ସେ ତୁମର ପତି ହେବେ ବୋଲି ପାର୍ବତୀ କହିଥିଲେ ପରା ?

Digitized by srujanika@gmail.com

ହ— [ମଥେଇ ପକାଇ] ହଁ ସଖି ଯଥାର୍ଥ । ସେକଥା ଏବେ ମନ ପଡ଼ିଲା ।

ଚ— ତେବେ ଆଉ ଚିନ୍ତା କାହିଁକି ?

ହ — ମୁଁ କେବେ ଧନ୍ୟ ହେବି ସିନା, ଯେଉଁମାନେ ଥରେ ତାହାଙ୍କୁ ମୋ ପାଖକୁ ଆଣି ମୋହର ଆକୁଳିତ ମନ ସାନ୍ତ୍ୱନା କର ସଖି ।

ଚ— ଭଲ ହୋଇଛନ୍ତି ! ତୁମ୍ଭର ମନମୋହନଙ୍କୁ ତୁ ସ୍ୱପ୍ନରେ ମାତ୍ର ଦେଖିନାହୁଁ । ମୁ କିପରି ତାହାଙ୍କୁ ଆଣି ତୁମ୍ଭ ପାଖରେ ଭେଟାଇବି ?

ହ— ସଖି ତାହାହିଁ ଉପସ୍ଥ ତୁମେ ଏକ କାଣ । ଯଦି ମୋତେ ଜାଗ୍ରତାବସ୍ଥାରେ ଦେଖିବାକୁ ତୁମ୍ଭର ଇଚ୍ଛାଥାଏ ତେବେ କପଟ ହେଲେ ତାହାଙ୍କ ମୋଟେ ଥରେ ଦେଖାଇଦେବ

ଚ— ସଖି ଏଡ଼େ ଅଧୈର୍ଯ୍ୟ କାହିଁକି ? ମନକୁ ସ୍ଥିର କର ତାହାଙ୍କର ନାମ ଧାମ ଜାଣିଲେ ତାହାଙ୍କୁ ଛଦ୍ମବର୍ତ୍ତନା କଣ କହିଲେ ସେ ଅଭିସାର ବନ୍ଦୋବସ୍ତ କରିବା ?

ହ— ମୋର କିଛି ଜଣା ନାହିଁ । ସ୍ୱପ୍ନରେ ଯେ ରୂପ ଦେଖିଥିଲି ତାହା ମନେ ଭଲରୂପେ ସ୍ମରଣ ହେଉନାହିଁ । ମୋ ମନରତ ସ୍ଥିରତା ନାହିଁ ମୁ କିସ କହିପାରିବି ସଖି !

ଚ— ଅଚ୍ଛା ମୁ କେତେକ ରାଜକୁମାରମାନଙ୍କ ଚିତ୍ରପଟ ଲେଖି ରଖିଅଛି । ତୁମ୍ଭଙ୍କୁ ସେ ସବୁ ଦେଖାଇବି । ଯଦି ସେମାନଙ୍କର କେ ତୁମ୍ଭର ମନୋହାରୀ ହୋଇଥିବେ କହିଲେ ଆଣିବା ପ୍ରଯତ୍ନ କରିବି । ଏହିକ୍ଷଣି ମୁ ଯାଇ ଚିତ୍ରପଟ ଗୁଡ଼ିକ ନେଇଆସିବି । ତୁମ୍ଭେ ଏଠାରେ ବସିଥାଅ

ହ— ଶୀଘ୍ର ଆସିବୁଟି ।

ଚ — ହେଉ ଏହିକ୍ଷଣି ଆସିବି । [ପ୍ରସ୍ଥାନ]

Digitized by srujanika@gmail.com

ଉ— (ସ୍ୱଗତ)

ରାଗ ଖାମ୍ବାଜ । ରୂପକ ତାଳ ।

ଅରେ ବଧାତା କେତେ ପରୁଷ ।
ସତେ ତୋହରତ ଅଟଇ ମାନସ । ୦ ।

ଲୋକଙ୍କ ଲୋକଙ୍କୁ ଦେଇ ପୀୟୁଷ ।
ଭୁଞ୍ଜିବା ହମନ୍ତେ ମାରଲୁ କୁଳିଶ । ୧ ।

ଲୋଡ଼ୁଥିଲି କ ମୁ ବଳାଇ ଆଶ ।
ରଖାଇଲୁ ଏବେ ତରୁଣ ହରଣ । ୨ ॥



ମୁ ହତଭାଗିନୀ କେତେ କର୍ମ କଲି । କାହ୍ନି କି ଦୂର ହୁଅ ବୋଲି କହିଲି ? ଆପଣା କର୍ମର ଫଳ ଏବେ ଭୋଗ କରୁଅଛୁ ।

[ଚିତ୍ରଲେଖାର ପ୍ରବେଶ]

ଚ— ସଖି ! ପଡ଼କ ଭିତରେ ଏତେ ଆତୁର ? ହେଉଟି ଦେଖ ।
[ଚିତ୍ରପଟ ଦେଖାଇ]

ରାଗ ଖମାଚ । ଅଡ଼ତାଳ ॥

ପଙ୍କଜାଖି ଏ ମାଳବେଶ ଖ୍ୟାତ ପୁଷ୍କର ନାମରେ ।
ଏହି ମୂର୍ତ୍ତିକି ତୁମ୍ଭେ ଦେଖିଲ ସଙ୍ଗିନି କହ ସ୍ୱପ୍ନରେ ? । ୧ ।

ଉ— ନା ସଖି ! ଏ ନୁହନ୍ତି ।
ଚ--[ଅନ୍ୟ ପଟ ଦେଖାଇ]

ସଙ୍ଗିନି ଏ ଉତ୍କଳେଶ ଗଜବଂଶ ଅବତଂସରେ ।
ଅଙ୍ଗ ଦେଶର ଚକ୍ରବର୍ତ୍ତି ଏ ତପ୍ତକାଞ୍ଚନ ମୂର୍ତ୍ତିରେ । ୨ ।

Digitized by srujanika@gmail.com

ଉ— ନା ସଖି ! ଏ ନୁହନ୍ତି ।
ଚ— [ଅନ୍ୟ ପଟ ଦେଖାଇ]

ସ୍ୱେଳ ଦେଶର ନାଥ ଏ ସଖି ଭୂଷିତ ସବୁ ଗୁଣରେ ।
ବଙ୍ଗଇଠ ଏ ଏହୁ ରୂପକ ଦେଖିଲ କହ ସତ୍ୟରେ ? ॥ ୩ ॥

ଉ— ଏ ମଧ୍ୟ ନୁହନ୍ତି ସଖି !
ଚ — [ଅନ୍ୟ ପଟ ଦେଖାଇ]

ଏହୁ ରୂପକ ସଙ୍ଗିନ ଅଟେ ଦେହଜ ଭ୍ରମର ମନରେ ? ।
ଧୀର ଖାର ଏ ମାର ପୁଡ଼ ଭୁଲ୍ଲ ନାହିଁ ଚନଲେକରେ , ୪ ॥

ଉ— ନା—ଆଁ — ଏ ନୁହନ୍ତି ପଚ ! କାହିଁ — ମୁଁ ଦେଖେ [ପଟ୍ଟ ନଜହସ୍ତରେ ଧର କଟ୍ଟୁକାଳ ନସ୍ରୀକ୍ଷଣ କର] ହ ସଖି ! ଏ ଏକା ! ଏ ଏକା ମୋ ପ୍ରାଣକୁ ହର ନେଇ ଅଛନ୍ତି ।

ରାଗ ଭୈରବୀ । ରୂପକ ତାଳ ।

ଦଚେକ ମୋ ପାପନେତ୍ରେ ଦେଖିବ ଗୋ । ସଙ୍ଗିନ ॥ ୦ ॥

ନନ୍ଦା କରେ ବକଣିତ । ନବଜ ଅତ ଲଳିତ ।
କାଶ ହାସରେ ପୂରିତ । ଏ ଲପନ ॥ ୧ ॥

ଉଚ ଲଳାଟ ସୁରଚିତ । କୁଞ୍ଚିତରେ ମାଳ ଯୁକତ ।
ନାନା ପୁଷ୍ପ ମାଳେ ଶୋଭିତ । ବକ୍ଷ ଦେଶ ॥ ୨ ॥

ପ୍ରେମ ଭରେ ଉଦ୍ବେଳିତ । କରକର ଜଣିଛୁତ ।
ଜାନୁ ପର୍ଯ୍ୟନ୍ତ ଲମ୍ବିତ । ଏ ବାହୁକୁ ॥ ୩ ॥

ସ୍ତ୍ରବୁ ସ୍ୱରଙ୍ଗେ କଷାସ୍ୱତ । ହୀରକ ନଖାଳ ଖଚତ ।
ମଦନ ଗର୍ବ ଖର୍ବୀକୃତ । ଏ ଚରଣ ॥ ୪ ॥

Digitized by srujanika@gmail.com

ଚ— କହୁ ଚନ୍ତା କରନାହିଁ । ଏହାଙ୍କୁ ମୁଁ ଖୋଜି ଅଣି ଅବଶ୍ୟ
ଦେଖାଇବ । ଏ କାମଦେବଙ୍କ ପୁତ୍ର । ଏହାଙ୍କର ନାମ
ଅନିରୁଦ୍ଧ । ଏ ଦ୍ୱାରକାରେ ଅଛନ୍ତି । ଜଗନ୍ମୋହନୀ ତୁମ୍ଭଙ୍କୁ
ଉପଯୁକ୍ତପାତ୍ର ପଠାଇ ଅଛନ୍ତି । କହୁ ଚନ୍ତା କରନାହିଁ ।

ଉ— ସଖି ! ନୃମ୍ନମନ । କେବେ ଏହାଙ୍କୁ ଏଠାକୁ ଆଣିବ
ତାହା ତୁମ୍ଭଙ୍କୁ ଲଚିଲା ।

ଚ— କିଛି ଭୟ ନାହିଁ ସଖି ! ମୁଁ ଯାଇ ସମସ୍ତ କଥା ବନ୍ଦୋବସ୍ତ
କରୁଛି—ବର୍ତ୍ତମାନ ତୁମ୍ଭେ ଶୟନ କରିବାକୁ ଯାଅ—
ମୁଁ ମଧ୍ୟ ଯାଏ ।

(ପ୍ରସ୍ଥାନ ଓ ଯବନିକାପତନ)



## ତୃତୀୟ ଦୃଶ୍ୟ ।

(ଚିତ୍ରଲେଖା ଦ୍ୱାରିକା ଗମନ)

(ବନପଥ)

ଚ — [ସ୍ୱଗତ] ଚନ୍ଦ୍ରଙ୍କୁ ଧରିବାକୁ ବାଳକର ଇଚ୍ଛା । ତାହାଙ୍କୁ
ଅଣିବାରଟ ସହଜ ବ୍ୟାପାର ନୁହେଁ ।

ରାଗ ଆନନ୍ଦ ଭୈରବୀ । ରୂପକତାଳ ।

ଜାଣିନପାରେ ମୁହଁ କପର ଯିବ ଦ୍ୱାରକା ।
ସେବେ ଯେତେକ ଲଗେ ତେଢ଼ଜ ମାଜରେ ଦକା । ୦ ।

ଚେଷ୍ଟିତ ଥିବ ନଗରରେ । ଚଉଦଶ ଯଦୁଗଣରେ ।
କହର ମୂର୍ଖ ସେ ଇଟରେ ଥାଇଛିବ ଏକା ? । ୧ ।

Digitized by srujanika@gmail.com

ପରୁଖା ଥିବତ ଗୟାର । ପରବତ ପର ପ୍ରାଚୀର ।
ପଶି ନ ପାରବ ଯହିଁ ଅଲକ୍ଷେ ମକ୍ଷିକା ।୨।

କ ବଚତ୍ତି ଆସି ପଡ଼ଲ । ଦେଖିଲେ ଅଚେ୍ଚ ମୁ ଅବଳା
ନଗଲେ ବୁଡ଼ବ ଭେଳା ହେବ କେ ମୋ ସଖା ? ।୩।

[କିଛି କାଳ ଆଲୋଚନା କର] ହଁ—

ଅଛନ୍ତ ବରଣ୍ଣ କୁମର । ମୋର ପରମ ଗୁରୁବର ।
ସ୍ମରବ ଉପାୟ କହବେ ମୋତେ ସେହ୍ଵ ଏକା ।୪।

—·—

[କିଛି କାଳ ସ୍ମରଣା କରବା]

ରାଗ ନାଦନାମକିଆ । ଆଦ୍ୟତାଳ ।

ଘେନ କରୁଣା କଧେ ମୋହର ବଦନ ।
ଦଅ ଦରଶନ ହେ ଗ୍ରରଣ ନନ୍ଦନ ।୦।

ଝଂଟ ହୋଇ ମୁ କରେ ଖିକର ସାହସ ।
କପର ମୋର ଏଡବ ଦୂରବ ମାନସ ? ।୧।

ଦେବ ତବ ଦାସୀକି ପାସୋର ଦେଲ କି ?
ତାପସ ଗଣ-ବର ହେ ବସିଛି ବଲୋକ ।୨।

ହେଉ କରୁଣା ଥରେ ଆହେ ବରଯତ ।
ଆଉ ଅଳସ କଲେ ବୁଡ଼ବ ସମ୍ପତ୍ତି ।୩।

—∞○∞—

[ନାରଦଙ୍କ ପ୍ରବେଶ]

Digitized by srujanika@gmail.com

ଚ— ନମସ୍କାର ପ୍ରଭୋ ।

ନା— କଲ୍ୟାଣ- କଲ୍ୟାଣ — ଚନ୍ଦ୍ରଲେଖେ— ତୁମ୍ଭେ ମୋତେ କହେବୁ ସ୍ମରଣା କଲ ?

ଚ— ଭଗବାନ ! ଆଉ କିଛି ନୁହେ । ଶୋଣିତପୁରାଧିପତି ଅସୁରରାଜ ବାଣର କନ୍ୟା ଉଷା ଅନିରୁଦ୍ଧଙ୍କୁ ସ୍ୱପ୍ନରେ ଦେଖି ତାହାଙ୍କ ପ୍ରତି ଏକାନ୍ତ ଅନୁରକ୍ତା ହୋଇ ବାତୁଳୀ ପରି ହୋଇ ପଡ଼ିବା ଜାଣି ଚନ୍ଦ୍ରାକର ବସିଅଛନ୍ତି । ମୁହିଁ ତାହାଙ୍କ ଦୂତୀ ହୋଇ ବର୍ତ୍ତମାନ ଦ୍ୱାରକାକୁ ଯାଉଅଛି ଦ୍ୱାରକା ରାଜଭବନରେ କପରି ପ୍ରବେଶ କରି ଅନିରୁଦ୍ଧଙ୍କୁ ଦେଖିପାରିବି ଆପଣ ତାହାକର ବୁଝାଇଦେବେ ବୋଲି ସ୍ମରଣା କଲି ।

ନା— ଏ ବଡ଼ ରହସ୍ୟ ଜନକ ବ୍ୟାପାର । ଶିବ ସେବକ ବାଣ ଅତ୍ୟନ୍ତ ଉଦ୍ଧତ ଏବଂ ଶ୍ରୀକୃଷ୍ଣଙ୍କର ଶତ୍ରୁ ଅଟେ । ଅନିରୁଦ୍ଧ ସେଠାରେ ପ୍ରବେଶ ହେବା ମାତ୍ର କଳହ ଜାତ ହେବ । କଳହ ଜାତ ହେଲେ ତୁଟାଇବା ସହଜ କଥା ନୁହେ ।

ଚ— ଆଜ୍ଞା ଏ ସବୁ ମୁଁ ଜାଣେ । ମାତ୍ର ବାଣର ଦର୍ପ ଚୂର୍ଣ୍ଣ କରିବା ପ୍ରକାରେ ଏ ସବୁ ଘଟିଅଛି । ସେ ଯାହାହେଉ ଅନିରୁଦ୍ଧଙ୍କୁ ନଦେଖିଲେ ଉଷା ବଞ୍ଚିବାର ଆଶା ନାହିଁ ।

ନା ଚନ୍ଦ୍ରଲେଖେ ! ଆମ୍ଭର ବରପ୍ରସାଦରୁ ତୁମ୍ଭର କାର୍ଯ୍ୟ ସିଦ୍ଧ ହେବ । ଏଥିରେ କିଛି ସନ୍ଦେହ ନାହିଁ । ଯଦି ବାଣ ଜାଣିପାରି ଅନିରୁଦ୍ଧର କୌଣସି ଅନିଷ୍ଟ କରିବ ତେବେ ଆମ୍ଭଙ୍କୁ ସ୍ମରଣା କଲେ ଆମ୍ଭେ ତାହାର ପରିତ୍ରାଣ କରିବୁଁ ।

ଚ— ହେ ଆଜ୍ଞା ! ମୁଁ ଆସୁଛି ବିଦାୟ ଦିଅ ।

Digitized by srujanika@gmail.com

ନା— ଅଗ୍ରୁ ଯାଅ [ଚିତ୍ରଲେଖାର ପ୍ରସ୍ଥାନ]

ନା— [ସ୍ୱଗତ] ଏତେଦିନକୁ ଦୁର୍ଦ୍ଦାନ୍ତ ଦାନବର ଦର୍ପ ଚୂର୍ଣ୍ଣ ହେବାର ସମୟ ଘଟିଅଛି । ଦେବାଧିଦେବଙ୍କର ବର ପ୍ରସାଦରୁ ଦୁରାତ୍ମା ଦର୍ପାନ୍ଧହୋଇ ଦେବତା ଓ ଋଷି ମାନଙ୍କର ଅନେକ ଅନିଷ୍ଟ କରୁଅଛି । ଯେବେ ବାଣର ଚନ୍ଦ୍ରମଣ୍ଡପରେ ଅନିରୁଦ୍ଧ ଗାନ୍ଧର୍ବବିଧାନରେ ଉଷାର ପାଣିଗ୍ରହଣ କରିବେ, ତେବେ ଯୁଦ୍ଧହେବାର ଅନିବାର୍ଯ୍ୟ ଯୁଦ୍ଧ ଉପସ୍ଥିତହେଲେ ଶ୍ରୀକୃଷ୍ଣଙ୍କୁ ଆଣି ଦେଖାଇଦେବୁଁ । ସେ ଆସିଲେ ବାଣର ଦର୍ପଦଳନହେବ । ଆମ୍ଭେ ଏହି କ୍ଷଣି ଯାଇ ଦେବତାମାନଙ୍କୁ ଏହି ଶୁଭସମ୍ବାଦ ଦେଇ ତାଙ୍କର ମନ ସନ୍ତୋଷ କରାଇବୁଁ ।

[ପ୍ରସ୍ଥାନ ଓ ଯବନିକାପତନ]



Digitized by srujanika@gmail.com

## ତୃତୀୟାଙ୍କ ॥

[ପ୍ରଥମଦୃଶ୍ୟ]

[ଚିତ୍ରଲେଖା ଦ୍ୱାରକାରେ ପ୍ରବେଶ]

[ଉଦ୍ୟାନବନ]

ଚି— (ସ୍ୱଗତ)

ରାଗ ନବରେଖ୍ ॥ ଅଦତାଳ ॥

କି ମନୋହର ଏ ବନ ଶୋଭା !
ଦେଖେ କି ସୁମ ପୁଞ୍ଜର ଆଭା ! ।
ନନ୍ଦନ କାନନ ସୁଷମାକୁ ।
ଧିକ୍କାର ଦିଏ ପଦ୍ମ ତଳକୁ ।
ବସନ୍ତ-ଉତ୍ସବ ଲକ୍ଷେ ।
କୁସୁମ ବୃକ୍ଷେ । ବିକାଶ ଉନ୍ମୁଖେ ।
ବସିଛନ୍ତି ପଶ୍ଚ ଅତି ଉତ୍ସୁକେ ॥ ୧ ॥

ମନ୍ଦାନିଳ ବହୁଛି କି ଭାବେ ।
କୂଜିତ ବିହଙ୍ଗମ ଗଣ ରାବେ ।
ମତୁଆଳ ଭୃଙ୍ଗ ମଧୁପାନେ ।
ଗୁଞ୍ଜନ କରଇ ବସି ସୁମନେ ।
ଏତେ କି ସୁନ୍ଦର ଦେଶେ ! ।
ନିଆଳୀ ମାଳତୀ । କଅଁଣ ସେବତୀ ।
ହର ନିଏ ମନ କେଉଁ ରଭସେ ॥ ୨ ॥

କଦଳୀ ଚମ୍ପକ ନାରିକେଳ ।
ରସାଳ ତମାଳ ତରୁଜାଳ ।
ଦାଡ଼ିମ୍ବ କୁଚକାଦ୍ଧ ବତାସ ।

Digitized by srujanika@gmail.com

ବେତସ ନାରଙ୍ଗ ପନସ ।
ଫଳ ପୁଷ୍ପଭର ହୋଇ ।
ପଡନ୍ତି ଲହସି । ଧରଣି ସ୍ପରଶି ।
ଦେଖିଦେଲେ ମନ ଫୁଲ୍ଲ ଉଠଇ ॥ ୩ ॥

ଆହା କ ମନୋହର ଦୃଶ୍ୟ ! ଏଠାକୁ ଆସି ପ୍ରାଣ ପୁଲକିତ ହେଲା । କିନ୍ତୁ ଅନିରୁଦ୍ଧ କେଉଁଠାରେ ଥିବେ? (ଇତସ୍ତତଃ ଦୃଷ୍ଟି) ସେ ଏକା ପରା ? ହଁ ଏଥିରେ ସନ୍ଦେହ ନାହିଁ । ଏକାକୀ ବସି ମନେ୨ କିସ ବିଚାର କରୁଅଛନ୍ତି । ଆହା କି କମନୀୟ କାନ୍ତି କେଉଁ ଯୁବତୀ ଏହାଙ୍କ ପକ୍ଷପାତିନୀ ନହେବ ? ଉଷା ଯଥାର୍ଥ ଭାଗ୍ୟବତୀ ଅଟେ । ଭଗବତୀ ଉପଯୁକ୍ତ ବର ଖଞ୍ଜି ଦେଇ ଅଛନ୍ତି । ହେଉ ଏଠାରେ ରହି ତାହାଙ୍କର ବର୍ତ୍ତମାନ ବ୍ୟବସ୍ଥା ବୁଝିବ । (ଦୂରେ ବୃକ୍ଷ ଅନ୍ତରାଳରେ ରହିବା)

ଅ— (ସ୍ୱଗତ)

ରାଗ ନାଟକଲୁବଞ୍ଜି । ଅଠତାଳ ।

ଜାଣି ନୋହେ ଆସି ଏକ ଉତ୍ତମ ଘଟିଲା ! ।
ସ୍ୱପ୍ନେ ଯେବଣ ସେହି ରୂପ ସତତ ଦିଶିଲା ॥ ୦ ॥

ଏକ ଚିତ୍ର କେଉଁଠାରେ ଶୁଣାଉ ନଥିଲା ! ।
ଚକ୍ଷୁ ବୁଜିଦେଲେ ଆସି ମନରେ ନାଚିଲା ॥ ୧ ॥

କାହିଁରେତ ଏବେ ମୋର ମନ ନ ରସିଲା ।
ହେଉ ସ୍ୱପ୍ନ ସ୍ୱନ୍ଦରୀର ସ୍ନେହରେ ମାତିଲି ॥ ୨ ॥

ସ୍ୱପ୍ନ ସ୍ଥିର ଦେଖି ଏହୁପରତ ହୋଇଲି ।
ସ୍ଥିର ଚକ୍ଷୁ ମେଲିଥିଲେ କି ହୁଅନ୍ତା ଭଲି ॥ ୩ ॥

Digitized by srujanika@gmail.com

ଅହ୍ହା ସେ କମଳଲୋଚନାର ମଧୁର ବଚନ ଶୁଣିଲାଠାରୁ ମୋ ଚିତ୍ତ ବଡ ଅସ୍ଥିର ହେଲାଣି । (ଦର୍ଶନଶ୍ଳାଘ ଗୀତ)
ପ୍ରାଣେଶ୍ୱର ! କହେଉ ସ୍ୱପ୍ନରେ ଦଶିଲ ? ଦଶିଲ ଯେ ଫେର କେଉଁଆଡେ ଗଲ ? ଗଲବେଳ ଭୂମିର ଦାମ ଧାମ ବଢ଼ିଲେ କହିଥାନ୍ତ । କହିଥିଲେ ଏ ହତାପିତ ପ୍ରାଣର କଷ୍ଟହେଲେ ସାନ୍ତ୍ୱନା ହୋଇ ନଥାନ୍ତା ? ବୋଧକରେ ଏସବୁ ମାୟା ଅଟେ । ନୋହିଲେ ସ୍ୱପ୍ନର ଦେଖିବା କଥା କେବେକ ସତ ହୋଇପାରେ ? କେଜାଣି ହମନ୍ତୁ ଏପର ସ୍ୱପ୍ନରେ ଦେଖିବା କଥା ସତ ହୋଇ ପଡବା ସମ୍ଭାବନା-ଯାଚାତିହ୍ୱରୂ-ମନଶା ବଡ ଆନ୍ଦୋଳିତ ହେଉଅଛି ।

ଚ— [ପ୍ରବେଶ] ହଁତାଙ୍କର ଯେଉଁ ଅବସ୍ଥା ଏହାଙ୍କର ସେ ସେହି ଅବସ୍ଥା । ଆସୁ ଏଥର ନିକଟକୁ ଯାଇ ପଚାରିବି ଦେଖା [ନିକଟକୁ ଯାଇ] ହେ ରାଜକୁମାର ! ଆପଣଙ୍କ ଶ୍ରୀମୁଖରେ ... କଥା ଜାଣିବାକୁ ଇଚ୍ଛାକରେ ।

... ତୁମ୍ଭେ କିଏ ? କାହିଁକି ଏଠାକୁ ଆସିଲ ?

ଚ— ମହାରାଜ ! ମୁଁ, ବାଣାସୁରଙ୍କ ଦୁହିତା ଉଷାଙ୍କର ସଖୀ ମୋହର ନାମ ଚିତ୍ରଲେଖା ଅଟେ ।

ଅ— କହେଉ ଏଠାକୁ ଅସିଲ ?

ଚ ମହାରାଜ ! କ୍ଷମାକରନ୍ତୁ । ମୋହର ସଖୀ ଦିନେ ସ୍ୱପ୍ନ... ଆପଣଙ୍କୁ ସ୍ୱପ୍ନରେ ଦେଖି ଏକା... ଅଧୀନା ହୋଇଯାଇଅଛନ୍ତି । ...ଦର୍ଶନ କରିବାଲାଗି ନଚାହାନ୍ତି ସେମାନେ ... ଆପଣଙ୍କ ଦର୍ଶନ ବିନା ସେ ପ୍ରାଣ ଧାରଣ କରିପାରିବେ କି ନା ସନ୍ଦେହ ।

Digitized by srujanika@gmail.com

ଅ — ଚନ୍ଦ୍ରଲେଖେ ! ମୋତେ ଏକା ଯେ ସ୍ୱପ୍ନରେ ଦେଖିଲେ ବୋଲି ପ୍ରମାଣ କଅଣ ?

ଚ — [ଚିତ୍ରପଟ ବଢ଼ାଇ] ଏହି ଚିତ୍ରପଟ ଆପଣଙ୍କର ନୁହେଁ ?

ଅ — [କ୍ଷଣକାଳ ଦେଖି] ହଁ ମୋହର ଏକା ।

ଚ — ତେବେ ଏହି ଚିତ୍ରପଟ ଅନୁଯାୟୀ ଜଣେ ବୀରପୁରୁଷଙ୍କୁ ଦେଖିଲି ବୋଲି ସେ ବାରମ୍ବାର କହନ୍ତି ।

ଅ — ତୁମ୍ଭ ସଖୀଙ୍କ ଚିତ୍ରପଟ ତୁମ୍ଭପାଖରେ ଅଛି ?

ଚ — ଆଜ୍ଞା ହେଉଛି । [ପଟ ଦେବା]

ଅ — [ପର୍ଯ୍ୟବେକ୍ଷଣ ପୂର୍ବକ] ଏ ଭୁବନମୋହିନୀ ଊଷାଙ୍କର ପଟ ?

ଚ — ହଁ — ଆଜ୍ଞା ! ସେ ଆପଣଙ୍କୁ ସ୍ୱପ୍ନରେ ଦେଖି ନିତାନ୍ତ ଅଧୀର ହୋଇଯାଉଅଛନ୍ତି । ଆପଣଙ୍କୁ ସାକ୍ଷାତ୍ ନ ଦେଖିଲେ ସେ କେତେ ମାତ୍ର ବଞ୍ଚିପାରିବେ ନାହିଁ । ତାହାଙ୍କର ଏ ଅବସ୍ଥା ଦେଖି ଆପଣଙ୍କୁ ସଙ୍ଗେ ନେବା ଲାଗି ମୁଁ ଆସିଅଛି ।

ଅ — ଚନ୍ଦ୍ରଲେଖେ ! ତୁମ୍ଭପାଖରେ ଆଉ କପଟ କାହିଁକି ? ମୁଁ ମଧ ତୁମ୍ଭର ସଖୀଙ୍କୁ ସ୍ୱପ୍ନରେ ଦେଖି ମୋହର ବାହ୍ୟ ଜ୍ଞାନ ଶୂନ୍ୟ ହୋଇଅଛି । ଯଦି ତୁମ୍ଭେ ଦୟାକରି ମୋତେ ନେଇ ତାହାଙ୍କୁ ଭେଟାଇଦେବ, ତେବେ ମୁଁ ଆଜୀବନ ତୁମ୍ଭପାଖରେ ଋଣୀ ହୋଇଥିବି ।

ଚ — ମହାରାଜ ! ଏତେକଥା କାହିଁକି ଆଜ୍ଞା କରନ୍ତି ? ଏଥିରେ ମୁଁ ଉପକାର କରିବା କଥା କିଛି ନାହିଁ ଏ ସବୁ ଈଶ୍ୱରଙ୍କ ଇଚ୍ଛା । ବର୍ତ୍ତମାନ ବିଳମ୍ବ ନକରି ବିଜେ କରନ୍ତୁ ।

ଅ — ଅଚ୍ଛା — ଆଗେ ଚାଲ ।

(ପ୍ରସ୍ଥାନ ଓ ଯବନିକା ପତନ)



Digitized by srujanika@gmail.com

## ଦ୍ୱିତୀୟ ଦୃଶ୍ୟ ।

[ଉଷା ପର୍ଯ୍ୟଙ୍କୋପରି ଅର୍ଦ୍ଧଶୟନା ଓ ଦାସୀ ପାର୍ଶ୍ୱେ ଦଣ୍ଡାୟମାନା]

ଦା—ଆଜ୍ଞା ! ଧୈର୍ଯ୍ୟ ଧରନ୍ତୁ ! ଶ୍ରୀଅଙ୍ଗ ଅସୁସ୍ଥ ଥିବା ସମୟରେ ଏତେ ଅଧୀର ହେବା କି ବିଧି ? ଦେଖନ୍ତୁ ଶ୍ରୀଅଙ୍ଗ କେବଳ ଶୁଖିଚାଲିଣି ।

ଉ— ଦାସି—ରୂନ ଦୁଅ ଆଉ ମତେ କିଛି କହନା ।

ଦା—ମୁଁ ଗୁରୁଙ୍କ ଭଲ ସକାଶେ ସିନା କହୁଛି ।

ଉ— ଖଗ ଖରହରପ୍ରିୟା । ଏକତାଳ ।

କି ପଶ୍ଚୁରୁ ଆଉ ମୋର ଭଲରେ ।
ସର ଯାଉଛନ୍ତି ମୋ ହାଲରେ ॥ ୦ ॥

ଆଉ କ୍ଷଣେ ବା ଘଡ଼ିକୁ । ଗୃହ ବାହାର ଯିବାକୁ ।
ହେଲାଣି ଠାବେ ପ୍ରାଣ କଲବଲରେ ॥ ୧ ॥

କି ପାପ ବା କରିଥିଲି । ହେବାକୁ ଏତେ ଧ୍ୟର ।
ଅଗ୍ନି ଅଣିଛି ମୋର ଗଳରେ ॥ ୨ ॥

—•• ❋ ••—

ଦା— ଏତେ କଥା କାହିଁକି ଆଜ୍ଞା ହେଉଛ ?

ଉ— ଦାସି—ଏ ମନ୍ଦସମୀରଣ କାହିଁକି ଏତେ ଉଷ୍ଣଲାଗେ ?

ଦା— ଆଜ୍ଞା ଶ୍ରୀଅଙ୍ଗ ସୁସ୍ଥ ନଥିଲେ ସବୁ ଅଦ୍ଭୁତ ବୋଧହୁଏ । [ବାହାରକୁ ଦୃଷ୍ଟି]
ଆଜ୍ଞା-ଚନ୍ଦ୍ରଲେଖା ଦେବି ଆସୁଅଛନ୍ତି ।

ଉ— କଣ କହୁଲୁ ?

Digitized by srujanika@gmail.com

ଦା— ଚନ୍ଦ୍ରଲେଖା ଆସୁଛନ୍ତି ।

ଉ— କାହିଁ ? [ଉଠିଦେଖି] ତେବେ ତୁ ଯା ।

ଦା— ଯେ ଆଜ୍ଞା [ପ୍ରସ୍ଥାନ]

[ଚନ୍ଦ୍ରଲେଖା ଅନିରୁଦ୍ଧଙ୍କୁ ଅଦୃଶ୍ୟ ରଖି ପ୍ରବେଶ]

ଉ– [ପର୍ଯ୍ୟଙ୍କରୁ ଉଠି] ସଖି ! ତୁମ୍ଭର ଆସିବା ପଥକୁ ଚାହିଁ ମୁଁ ବଡ ଉତ୍କଣ୍ଠିତା ହେଉଥିଲି ।

ଚି— ଏତେ ଉତ୍କଣ୍ଠିତା କାହିଁକି ?

ଉ— ଏତେ ଦିନ ପର୍ଯ୍ୟନ୍ତେ କସ କରୁଥିଲ ସଖି ?

ଚ— ଦ୍ୱାରକା କ ପାଖରେ ଅଛି ? ଯିବା କାର୍ଯ୍ୟ କ ହାତରେ ପଡିଛି ?

ଉ— [ହସ୍ତଧରି] ମୋଠାରେ ଏତେ ବିରକ୍ତ କାହିଁକି ସଖି ?

ଚ— ବିରକ୍ତ ନହୋଇ ହେବ କସ ?

ଉ— ନା-ସଖି-ଯିବା କାର୍ଯ୍ୟ କଣ ହେଲା ?

ଚ— ସବୁ ଠିକ ହୋଇଅଛି ।

ଉ— [ହସ୍ତଧରି] ସତେକି ସଖି ?

ଚ— ହଁ ସବୁ ଠିକ ହୋଇଅଛି । ମାତ୍ର ସ୍ୱାମୀମାନେ ପ୍ରଥମ ଦର୍ଶନରେ ନାନାଦ ହବର କରନ୍ତି ବୋଲି ସେ ଆସିବାକୁ ନିତାନ୍ତ ଅନିଚ୍ଛୁକ ।

ଉ— ସଖି ଏ ତୁମ୍ଭର ମନଗଢ଼ା କଥା ପରି ବୋଧହୁଏ ।

ଚ— ନା ସଖି ମୁଁ ସତ କହୁଛି ।

ଉ— ତେବେ ସେ କୋଠାରେ ଅଛନ୍ତି ସଖି ?

ଚ—ତୁମ୍ଭକୁ ସେ କଥା କାହିଁକି ? ହବର ନକରିବା କଥା ଆଗେ କହ ।

ଉ— ହବର କାହିଁ କିଃଖି ?

ଚ— ତେବେ ବସିଥାଅ ମୁଁ ଯାଇ ଆସେ ।

[ପ୍ରସ୍ଥାନ—କିଛିକାଳାନନ୍ତର ଅନିରୁଦ୍ଧଙ୍କ ପୁନଃ ପ୍ରବେଶ]

Digitized by srujanika@gmail.com

ଚ— ହଁଖି ତୁମ୍ଭେ ତାହାଙ୍କଲାଗି ଏତେ ଉତ୍କଣ୍ଠିତା ହେଉଥିଲ
ମୁଁ ହେଉଛି-ଅନୁମତି ଦିଅ ମୁଁ ଯାଏ । [ଅନିରୁଦ୍ଧଙ୍କପ୍ରତି]
ମହାରାଜ ! ସେଠାରେ ଅପେକ୍ଷାକରନ୍ତୁ । [ପ୍ରସ୍ଥାନୋନ୍ମୁଖ]

ଉ— ସଖି ମତେ ଏକୁଟିଆ ଛାଡ଼ି କେଉଁଆଡ଼େ ଯିବ ?

ଚ— ଏକୁଟିଆ କାହିଁକି ? ସାରବର ଅନିରୁଦ୍ଧ ପାଖରେ ଥିବା
ଠାରେ ଏକୁଟିଆ କପର ? [ପ୍ରସ୍ଥାନ]

ଉ— [ଲଜ୍ଜାରେ ଅଳ୍ପ ଦୂରରେ ରହିବା]

ଅ— ନେତ୍ରାନନ୍ଦକାରିଣି ! ତୁମ୍ଭଙ୍କୁ ମୁଁ ସ୍ୱପ୍ନରେ ଦେଖି
ନିତାନ୍ତ ଚିନ୍ତିତ ଥିଲି । ଏମନ୍ତ ସମୟରେ ତୁମ୍ଭ ପ୍ରିୟସଖି
ଚିତ୍ରଲେଖା ଆସି ତୁମ୍ଭେ ମଧ୍ୟ ମତେ ସ୍ୱପ୍ନରେ ଦେଖି
କେବଳ ଅଧୀର ହୋଇଥିବାର ମତେ କହିଲେ; ଆଉ
ତୁମ୍ଭଠାକୁ ଆସିବାକୁ ସେ ମତେ ଅନୁରୋଧ କଲେ ।

ଉ— ମହାରାଜ ! ଚିତ୍ରଲେଖା ଆପଣଙ୍କଠାରେ ମିଥ୍ୟା କହିଅଛି

ଅ— ଚନ୍ଦ୍ରାନନେ । ମିଥ୍ୟା ହେଉ ଵା ସତ୍ୟ ହେଉ ତୁମ୍ଭର
ରୂପ ଯୌବନ ଓ ଗୁଣ ବର୍ଣ୍ଣନାରେ ମୁଁ ମୁଗ୍‌ଧହୋଇ
ଅଯସ୍କାନ୍ତ ଆକର୍ଷିତ ଲୌହପରି ତୁମ୍ଭର ସ୍ନେହାକର୍ଷଣରୁ
ତାହାଙ୍କ ସଙ୍ଗେ ଆସି ଏଠାରେ ହାଜର ହୋଇଅଛି ।
ଏବେ ତୁମ୍ଭେ ଦୂରରେ ଛିଡ଼ାହେଲେ କପର ହେବ ?
ତୁମ୍ଭ ମୁଖ ଲାବଣ୍ୟ ଦର୍ଶନକରି ମୁଁ ଯେ ଆନନ୍ଦ ଲଭି
ଅଛି ତାହା ଅନିର୍ବଚନୀୟ । ସୁରୁହାସିନି ! ବଚନସୁଧା
ବିତରଣ ନକରି ମୌନାବଲମ୍ବନ କର କାହିଁକି ?

ରାଗ ଶଙ୍କରାଭରଣ । ଆଡ଼ତାଳ ।

ଅରେ ଶୁଣ ମଧୁର-ମୃଦୁ-ସ୍ୱର ।
ଆସି ରହସେ ହରଷେ ମୋର ପାଶ ।
ଶାନ୍ତ କର ମୋର ରୁ ହର ପରତାପ ମୁଁ ତୋ ଦାସ ।୦।

Digitized by srujanika@gmail.com

ଗଜଗଢେ ଅଳପ ପରକାଶ ।
ବାରେ ପୀୟୂଷ-ସରସ-କୁନ୍ଦ-ହାସ ।
ଆରେ ବର ବରଜା ନକର ନୋଶ ମୋ ଉଲ୍ଲାସ ॥ ୧ ॥

ତଅ ଥରେ ଅଧର ମଧୁ ପାନ ।
ଧୀରେ ସଧୀରେ କର ରୁ ଆଲିଙ୍ଗନ ।
ମାର ଦୁର ଶରରେ କର ହୃଦବାଣ ନବ ପ୍ରାଣ ॥ ୨ ॥



[କର ଧରବା]

ଢ— [କର ଝିଙ୍କିଅଣି] ମହାରାଜ କ୍ଷାନ୍ତ ହୁଅନ୍ତୁ । ମୁଁ ସ୍ୱାଧୀନା ନୁହେଁ । ପିତା ମାତାଙ୍କ ଅଜଣାରେ ପର ପୁରୁଷର ଅଙ୍ଗ ସ୍ପର୍ଶ କଲେ କୁଳକଳଙ୍କିନୀ ହୋଇଯିବ ।

ଅ— ସୁନ୍ଦର ଏତେ ଭୟ କାହିଁକି ? କ୍ଷତ୍ରିୟକୁଳରେ ଚଗ- ଚରତପ୍ରଥା ଏହ୍ୱେଜ ସେମାନେ ସ୍ୱେଚ୍ଛାରେ ପିତାମାତାଙ୍କ ବନାନୁମତରେ ଗାନ୍ଧର୍ବବଧାନରେ ପାଣିଗ୍ରହଣକର ପାରନ୍ତି । ଏଥିକ ବଏ କହାକରପାରବେ ନାହିଁ ।

ଢ— ମହାରଜ ! ଆପଣ ଯଥାର୍ଥ କହନ୍ତି ?

ଅ— ସନ୍ଦେହ କ ?

ଢ— ମହାରାଜ ! ଯାହା ହେଉ ମତେ ଭୟଲାଗୁଛି । କ୍ଷମା କରନ୍ତୁ ମୁଁ ମୋ ସଖୀଙ୍କି ପଶ୍ଚର ଆସେ ।

[କହ କରୁ ଦୂର ଯାଇ ମନେ୨]

ଦେଖ ପାର୍ବତୀ କହଅଛନ୍ତି "ତୁମ୍ଭେ ସ୍ୱପ୍ନରେ ଯେଉଁ ବୀରପୁରୁଷଙ୍କୁ ଦେଖିବ ସେ ତୁମ୍ଭର ପତି ହେବେ" ପିତାମାତାଙ୍କ ଅନୁମତ ନାହିଁ ବୋଲି ମୁଁ ଅଙ୍ଗୀକାର ନକଲେ ମଧ, ଭଗବତୀଙ୍କର ବାକ୍ୟ ଅନ୍ୟଥା ହେବ-

Digitized by srujanika@gmail.com

ନାହିଁ । ବିଶେଷତଃ ଯାହାଙ୍କ ପ୍ରତିମୂର୍ତ୍ତି ସ୍ୱପ୍ନରେ ଦେଖି
ମନ ଏତେ ସନ୍ତାପିତ ହେଉଥିଲା ତାହାଙ୍କୁ ପ୍ରତ୍ୟକ୍ଷରେ
ଦେଖି୨ କିପରି ବାହାରିଯିବ ? ଛଳରେ ଯିବ ବୋଲିଲେ
ମଧ୍ୟ ପାଦ ଚଳୁନାହିଁ । ଏବେ ମୁଁ କରିବି କିସ ?
[କିଛିକାଳ ଚନ୍ଦ୍ରାକର ଫେରି ଜନରୁଦ୍ରଙ୍କ ପାଖରେ
ପ୍ରବେଶ] ମହାରାଜ ! ଆପଣ କହିବା କଥା ମୁଁ ବିଶ୍ୱାସ
କରୁନାହିଁ ବୋଲି ମନେ କରନ୍ତୁନା । ମାତ୍ର—
ଅ— "ମାତ୍ର" କଅଣ—ସୁନ୍ଦର ?

ରାଗ ଶ୍ରୀ । ଆଦିତାଳ ।

ଚ—ସୁନ୍ଦର ବର ମତେ ଲାଗଇ ବଡ଼ ଭୟ ଏହି କଥାକୁ ଚିନ୍ତା
ସର୍ବଦା ହୋଇ ମୁଁ ପାରିବି ନାହିଁ ପରି
ତୁମ୍ଭର ସ୍ନେହାଧୀନା । • ।

ଅ—କୁନ୍ଦଦଶନ ଯେବେ ଆଜହୁଁ ମୋର ପ୍ରାଣ ଧନ ମୁଁ ଦେଲି
ତୋତେ । ସଂସାରେ କାହାକୁ ଚାହିଁ ପର ଜଣେ
ବିଲୋକ ନାହିଁ ମତେ । • ।

ଚ—ଥାଇପାରନ୍ତି କେତେ ତୁମ୍ଭର ଅନ୍ତଃପୁରର ରମଣୀମଣି ଗଣ
କେଜାଣି ତାହୋର ହିଅନ୍ତି ତାଙ୍କୁ ଦେଖି
ନାଗର କୁଳବଣ । ୦ ।

ଅ—ମଦନଙ୍କ ପିନ ଶୁଣ ତୋହର ବିନା ମୋର ନାହିଁତ କେହି
ଆଉ । ମାଗଇ ଏତକ ଜୀବନ ଥିବା ଯାକ
ମୋଠାରେ ଦୟା ଥାଉ । ୦ ।

ଚ—ପଙ୍କଜ ଚରଣରେ ଶରଣ ପଶିବା ଡାହୀର ଗତି କିସ ?
ତୁମ୍ଭର ସ୍ନେହ ବିନା ଆଉ କ ଲୋଡ଼ିବି
ଜାଣ ହେ ପ୍ରାଣେଶ୍ୱର । • ।

Digitized by srujanika@gmail.com

ଅ— ପ୍ରାଣେଶ୍ୱର ! ତୁମ୍ଭର ବଚନ ଶ୍ରବଣ କରି ମୁ ଅସାଧାରଣ ଆନନ୍ଦ ଲାଭ କରୁଅଛି । ତୁମ୍ଭର ଅଙ୍ଗ ବଡ଼ ଅସୁସ୍ଥ ଦିଶୁଅଛି । ଏବେ ଘଡ଼ିଏ ଚେତ ରହିତା ଅବଧି । ଆସ ଶୟନ କରିବା ।

ଉ — ଆର୍ଯ୍ୟପୁତ୍ରଙ୍କ ଯେ ଅଭିରୁଚି ।

[ଅନିରୁଦ୍ଧ ଉଷାଙ୍କ କରଧରି ପର୍ଯ୍ୟଙ୍କ ନିକଟକୁ ଯିବା]

(ପ୍ରସ୍ଥାନ ଓ ଯବନିକାପତନ)

ତୃତୀୟ ଦୃଶ୍ୟ ।

[ବାଣ ଓ କୁମ୍ଭାଣ୍ଡ ଆସୀନ]

କୁ— ମହାରାଜ ! କି ଅଦ୍ଭୁତ ହେଲା । ଚତୁର୍ଦ୍ଦିଗରେ ବଡ଼ା ମେଘେ ମୁହୁର୍ମ୍ମୁହୁ ଅଶନିପାତ । ବସୁମତୀ ଘନଘନ କମ୍ପମାନା ! କି ସର୍ବନାଶ ! କୁମାରବର ମୟୂରଧ୍ୱଜ ସହସା ଭୂତଳେ ନିପତିତ ହେଲା ।

ବା— ମନ୍ତ୍ରିନ୍ ! କୁମ୍ଭାଣ୍ଡ ! କାପୁରୁଷର ପରି ଏତେ ଭୟ କାହିଁକି ? କୁମାରବର ଶିଖିଧ୍ୱଜ ଭୂପତିତ ହେବାର ଶୁଣି ମୁ ଅତି ଆନନ୍ଦିତ ହେଲି । ଅବଶ୍ୟ କୌଣସି ବୀର ଯୁଦ୍ଧକୁ ଆସିବାର ଜଣାଯାଏ । ଏତେ ଦିନକୁ ମହାଦେବଙ୍କ ବରପ୍ରସାଦରୁ ମୋହର ରଣପିପାସା ଦୂର ହେବ । ଦେଖ ! ଏହି ପ୍ରଚଣ୍ଡ କୃପାଣରେ ସେ ବୀର ପୁରୁଷର ଶିରଚ୍ଛେଦନ କରିବି ।

(ଦ୍ରୁତପଦେ ରାଣୀଙ୍କ ପ୍ରବେଶ ଓ ମନ୍ତ୍ରୀର ପ୍ରସ୍ଥାନ)

Digitized by srujanika@gmail.com

ବା— ପ୍ରିୟେ ! ଏଠାରେ ବସ ।
ସ— ମହାରାଜ ! ବସିବ କଅଣ ?
ବା— କଅଣ ହେଲା ! ପ୍ରିୟେ ?
ସ — ମହାରାଜ ! କଅଣ ହେବ ସର୍ବନାଶ ହୋଇଅଛି ।
ବା— ପ୍ରିୟେ ! ଏତେ ବଡ଼କଥା କାହିଁକି ? କସ ହେଲା ?
ସ— ତୁମ୍ଭେ ସଂସାରର ସର୍ବଚିନ୍ତା ପରିତ୍ୟାଗ କରି ସମସ୍ତ ବିଷୟରେ ଜଳାଞ୍ଜଳିଦେଇ ସର୍ବଦା ଯୁଦ୍ଧ ବୋଲି ରହିଲ । ଗୃହରେ ପୂର୍ଣ୍ଣଯୌବନା ଅବିବାହିତା କନ୍ୟାକୁ ରଖି ଆଜପର୍ଯ୍ୟନ୍ତ ତାହାର ବିବାହଲାଗି କୌଣସି ବନ୍ଦୋବସ୍ତ କଲନାହିଁ । ସେ ବର୍ତ୍ତମାନ ତୁମ୍ଭ ପବିତ୍ର କୁଳର ମର୍ଯ୍ୟାଦା ହରାଇ ବସିଅଛି । ସେହି ଲଜ୍ଜାହୀନା କନ୍ୟା ନିଶାସମୟରେ ନିଜ-ଭବନରେ କୌଣସି ଅପରିଚିତ ଯୁବକର ସହିତ ଗାନ୍ଧର୍ବବିଧାନରେ ବିବାହ ହୋଇଅଛି ।
ବା—ପ୍ରିୟେ ! ଏହା ମତେ କିଛି ବିଶ୍ୱାସଲାଗୁନାହିଁ । ଉଷା ପବିତ୍ର ହୃଦୟା- ସେ ଏପରି କାର୍ଯ୍ୟ କରିବାର ସମ୍ଭାବନା ନାହିଁ
ସ— ମହାରାଜ ! ମୁଁ କ ଶ୍ରମୁଖରେ ମିଥ୍ୟା କହେ ? ଉଷା ମୋହର ଗର୍ଭଜାତ କନ୍ୟା । ତାହାକୁ ମୁଁ ପ୍ରାଣଠାରୁ ଅଧିକ ସ୍ନେହକରେ । ତାହାଠାରେ କି ମୁଁ ମିଥ୍ୟା-ଦୋଷାରୋପଣ କରିବି ?
ବା—ତେବେ ସେ ଯୁବକ କିଏ ? ଦୁରାତ୍ମାର ଏତେ ସାହାସ ! କ୍ଷୁଦ୍ର ମୂଷିକ କେଶରୀର ଗୁହାରେ ପ୍ରବେଶକରି ଏତେ ଦାମ୍ଭିକ କାର୍ଯ୍ୟ କରିଅଛି ? ଆଚ୍ଛା ଏହିକ୍ଷଣି ତାହାକୁ ଯମାଳୟକୁ ପ୍ରେରଣକରିବି । ପ୍ରିୟେ ! ତୁମ୍ଭର ହତ-ଭାଗିନୀକନ୍ୟାର ଲାଗି ଆମ୍ଭ ପବିତ୍ର କୁଳରେ କଳଙ୍କ ଲାଗିବ ବୋଲି ମୁଁ କେବେ ସ୍ୱପ୍ନଜଥିଲି । ହେଉ ତୁମ୍ଭେ

Digitized by srujanika@gmail.com

ସେ କୁଳକଳଙ୍କିନୀକ ଉପଯୁକ୍ତ ଦଣ୍ଡଦେବ । ମୁଁ ସେ ସ୍ୱୈରର କଥା ଦେଖିବ ?

ରା— ମହାରାଜ ! ଉଷାର କ ଦୋଷ ? ତାହାକୁ ଅଳଙ୍ଘ୍ୟ ବବାହ ନକର ରଖିବା ତୁମ୍ଭର ଦୋଷ ?

ବା—ଆଚ୍ଛା ତୁମ୍ଭେ ଅନ୍ତଃପୁରକୁ ଯାଅ ! ମୁଁ ଯାଇ ସେ ତସ୍କରର ନିରୋଷ୍ଟେଦନକର ଆସିବ ।

ରା— ଯେ ଆଜ୍ଞା (ପ୍ରସ୍ଥାନ ଓ ମନ୍ତ୍ରୀର ପୁନଃପ୍ରବେଶ)

ବା— ମନ୍ତ୍ରିନ୍ ! ଏହୁକ୍ଷଣି ରାଣୀ କହୁଗଲେ କୌଣସି ଏକ ଯୁବକ ଗୁପ୍ତଭାବରେ ଆସି ଗାନ୍ଧର୍ବବଧାନରେ ଉଷାର ପାଣିଗ୍ରହଣ କରୁଅଛୁ ।

ମ— ମହାରାଜ ! କେଡେ ସାହସ କଥା !

ବା—ମନ୍ତ୍ରୀନ ! ଚାଲ ! ଶୀଘ୍ର ଯାଇ ସେ ଦୁରାତ୍ମାକୁ ଯମାଳୟ ଦେଖାଇବା ।

ମ— ଯେ ଆଜ୍ଞା—[ଦୁହେଁ ଉଠିବା ଓ ଯବନିକା ପତନ]



## ଚତୁର୍ଥ ଦୃଶ୍ୟ ।

(ଉଷା ଓ ଅନିରୁଦ୍ଧ ପର୍ଯ୍ୟଙ୍କୋପରି ଉପବେଶନ)

ଅ— ପଙ୍କଜାନନେ ! କୋକିଳର ପଞ୍ଚମତାନରେ ଗାନ; ମୟୂରର କେକାରବ; ଜନମନୋହର ଷଟ୍ପଦଙ୍କର ଝଙ୍କାର; ଗନ୍ଧବହ ମନ୍ଦସମୀରଣ, ଏବେ କ ହିତକର ବୋଧ ହେଉଅଛୁ ! ଯେବେ ମୁଁ ତୁମ୍ଭର ବିରହରେ ପୀଡ଼ିତଥିଲି, ତେବେ ଏମାନେ କେତେ ଦୁଃଖ ଦେଉଥିଲେ ଏବେ କେତେ ସୁଖ ଦେଉଅଛନ୍ତି । ସୁବୁଦ୍ଧାସିନି ! ଏ ସବୁ ତୁମ୍ଭର କୃପାରୁ ନୁହେଁ କ ?

Digitized by srujanika@gmail.com

ଉ— ଆର୍ଯ୍ୟପୁତ୍ରଙ୍କର ଏ କେବଳ ସ୍ତୁତିଉକ୍ତି ମାତ୍ର ।
ଅ— ନା—ମୁଁ ଯଥାର୍ଥ କହୁଅଛୁ ।

ରାଗ ଝଞ୍ଜୋଟୀ । ଆଦିତାଳ ।

ପ୍ରାଣ ପ୍ରେୟସୀ ତୁମ୍ଭୋର । ତୋର କୃପାରୁ ।
ପୂର୍ବ ପୁଣ୍ୟ ପୁଞ୍ଜ ଏବେ ଫଳିଲା ॥ ୦ ॥

ତୋ ମୃଦୁ ଅଙ୍ଗ । ଲାଗେ ଅନଙ୍ଗ— ।
ବାଧାରୁ ମୋହର ହୃଦୁ ନାଶିଲା । ୧ ।

ମୋ ସ୍ୱର୍ଗ୍ୟ ବନେ । ବସାଇ କୋଳେ ।
ମଣଇ ଇନ୍ଦ୍ର ପଦ ମିଳିଲା । ୨ ।

ପ୍ରାଣ-ଆରାମ । ସୁଧା ବଚନ ।
ପାନରୁ କାମ-ତୃଷା ତୁଟିଲା । ୩ ।

---

ଉ— ମହାରାଜ ! ମୁଁତ ଆପଣଙ୍କ କ୍ଷଣାଦାସୀ—ଦାସୀଠାରେ ଏପରି ବଚନରେ କହିବା ଉଚିତ ନୁହେଁ । ମୋଠାରେ ଯଦି ଆପଣଙ୍କ ଏହି ସ୍ନେହଭାବ ସବୁଦିନେ ରହିବ ତେବେ ମୋହର ସବୁ ହେଲା ।
ଅ— ଏତ ବଡ଼ ଆଶ୍ଚର୍ଯ୍ୟର ବିଷୟ । ମୁଁ ତୁମ୍ଭଠାରେ ପ୍ରାଣ ବିକିଦେଇଥିଲାଠାରେ ଆହୁ ଏପରି କାହିଁକି କହୁଅଛ ।
[ଚିତ୍ରଲେଖାର ଦ୍ରୁତ ପ୍ରବେଶ] ।
ଚି — ରାଜନନ୍ଦିନି ! ସର୍ବନାଶ ହେଲା !
ଉ— କଣ ସଖି ? ।
ଚି— ତୁମ୍ଭ ଗାନ୍ଧର୍ବବିଧାନରେ ବିବାହ ହେବା କଥା ରାଣୀ

Digitized by srujanika@gmail.com

ଜାଣିପାରି, ମହାରାଜାଙ୍କ ସମ୍ମୁଖରେ ସବୁ କହିଦେଲେ ।
ମହାରାଜ ଅତି କ୍ରୋଧରେ ମନ୍ତ୍ରୀଙ୍କ ସଙ୍ଗେ ଘେନି ଏଣେ ଅସୁଅଛନ୍ତି ।

ଉ— ସତେକି ସଖି ?

ଚ— କଣ ମୁଁ ମିଛ କହୁଛି ?

ଉ— ହା ଦୈବ ! ହା ବିଧାତା ! କି ବିପତ୍ତି ଆଣି ଘଟାଇଲୁ ! ଏବେ କବୁଦ୍ଧିକରିବ ? କେଣେ ଯିବ ? କେ ମତେ ରକ୍ଷା କରିବ ? ହା ପରମେଶ୍ୱର ! ହା ଜଗନ୍ନାଥ ! [ଚନ୍ଦ୍ରଲେଖାର ହସ୍ତ ଧରି]

ରାଗ ହିନ୍ଦୁସ୍ଥାନଭୈରବ । ଅଠତାଳ ।

ଆହା ପ୍ରାଣ ସଖି ମୋର ।
କି ଗତି ଏବେ କହ ହେବର ? ॥ ୦ ॥

ଲାଗୁ ଥିଲା ଭୟ ଯାହା ।
ଘଟିଲା ଆସି ନିକର ତାହା ॥ ୧ ॥

ଆଉ କି ରଖିବେ ତାତ ? ।
କରିବେ ନଷ୍ଟେ ପ୍ରାଣରେ ହତ ॥ ୨ ॥

ଏହା ମୋର ଭଲେ ଲହି ।
ଥିଲାକି ସତେ ଦାରୁଣ ବିହି ॥ ୩ ॥



ସଖି ଚନ୍ଦ୍ରଲେଖେ ! ଏବେ ମୋର କି ଗତି ? ଏ ବିପଦରୁ କିପରି ରକ୍ଷା ପାଇବି ?

ଅ— ସୁନ୍ଦରି, ଏତେ ଧୈର୍ଯ୍ୟ କାହିଁକି ? ନିଖିଳବ୍ରହ୍ମାଣ୍ଡନାଥ

Digitized by srujanika@gmail.com

ଶ୍ରୀକୃଷ୍ଣଙ୍କର ପୌତ୍ର ଓ ବଣୁବିଜୟୀ ମନ୍ମଥଙ୍କ ପୁତ୍ର ଅନିରୁଦ୍ଧ ଥିବାଠାରେ କାହାର ସାଧ ଯେ ତୁମ୍ଭର ଅନିଷ୍ଟ କରିବ ?

ଉ— ଆର୍ଯ୍ୟପୁତ୍ର, ଆପଣ ମୋ ପିତାଙ୍କୁ ଜାଣିନାହାନ୍ତି । ସେ କି ଅଣୁମାତ୍ର ଦୋଷ ଦେଖିଲେ ରୋଷରେ ପ୍ରଜ୍ୱଳିତ ହୋଇଯାନ୍ତି, ମୋର ଗୁପ୍ତପରିଣୟ କଥା ଶୁଣିଲେ ସେ କି ମୋତେ ଆଉ ପ୍ରାଣରେ ରଖିବେ ? ମହାରାଜ, ଏବେ ମୋହର ମରଣ ଧ୍ରୁବ । ଆପଣଙ୍କଠାରେ ମୋହର ଏହି ଶେଷ ବିଦାୟ [କର ଯୋଡ଼ି ପ୍ରଣାମ କରିବା] । [ଉଠି] ମୋହର ସମସ୍ତ ଦୋଷ କ୍ଷମାକରି କେବେ ହେଲେ ମୋତେ ମନେ ପକାଉଥିବେ—ଏତିକି ଏକା ଏ ହତଭାଗିନୀର ମାଗୁଣି ।

ଅ— ସୁନ୍ଦରି, ତୁମ୍ଭଠାରେ କାହିଁକି ଏତେ ଭୟ ? ଚନ୍ଦ୍ରଲେଖେ ଏହାଙ୍କୁ ଅଟ୍ଟାଳିକା ଉପରକୁ ଘେନିଯାଅ ।

ଚ— ଯେ ଆଜ୍ଞା ! [ବାଣ ଓ କୁମ୍ଭାଣ୍ଡର ଘୋର ରଡ଼ି]

ଉ— [ସଭୟେ] ହା ଦେବ—ହା ପରମେଶ୍ୱର— ଏ ଘୋର ସଙ୍କଟୁ ରକ୍ଷାକର—ରକ୍ଷାକର ।

ଚ— ସଖି, କାହିଁକି ଏତେ କାତର ହେଉଅଛ ? ଶାନ୍ତହୁଅ ।

ଉ— ହେ ପରମେଶ୍ୱର— ରକ୍ଷାକର—ରକ୍ଷାକର ।

ଚ— ରାଗ ମଲ୍ଲାର । ଅଠତାଳ ।

ଶୁଣ ସଖି ମୋ ବଚନ ଶୁଣ ।<br>ଏପରି ଚିନ୍ତାକର କି କାରଣ ? ।୦।

ବିପଦ ସମୟେ ସାହସ ହୀନ ।<br>ହେବା କାପୁରୁଷଙ୍କ ଲକ୍ଷଣ ।

Digitized by srujanika@gmail.com

ଯଦି ହେବ କର ନୁହେଁ ଜାଣ ।
କେତେ ମାତର ପ୍ରତ ବିଧାନ ॥
ତୁମ୍ଭେ ହେବନା ଲଘୁ ଦ୍ୱିଗୁଣ ।
ଏହା ଅଟେ ସଖି ପରମାଣ ॥ ୧ ॥

ଯାହାଠାରୁ ବଳ ଗାର ନାହିଁ ।
ତିନଲୋକ ବିଜୟୀ ଯେହି ॥
ତାଙ୍ଖେ ଥାଉ ହାଜର ହୋଇ ।
ଷଡ କରବ ତୁମ୍ଭର କେହି ? ॥
ହୋଇଯାଉଛ କାହିଁକି ଛନ୍ନ ।
ଏବେ ହୁଅ ସଖି ସାବଧାନ ॥
ମନେ ନ ଘେନ କିଛିହି ଆନ ।
ଚାଲ ଯିବା ଏଠାରୁ ବହନ ॥ ୨ ॥

———

ସଖି । କିଛି ଭୟକରନାହିଁ । ସବୁ ଆପଦ ଘୁଞ୍ଚିଯିବ ଧୈର୍ଯ୍ୟଧର ମୋସାଙ୍ଗେ ଚାଲ ଯିବା [ଉଷାଙ୍କ ଧର ପ୍ରସ୍ଥାନ]
[ବାଣ ଓ କୁମ୍ଭାଣ୍ଡର ପ୍ରବେଶ]

ବା—[ଅନିରୁଦ୍ଧଙ୍କୁ ଦେଖି] ରେ ଧୂର୍ତ୍ତ ତସ୍କର ! ପ୍ରେତଭୂମିକି ଯିବାକୁ ପ୍ରସ୍ତୁତ ହୁଅ ।

ଅ— ଦୈତ୍ୟେନ୍ଦ୍ର ! ତିରସ୍କାର କରିବା କି ଖାପେଖୁଡ଼ିବାପାଇଁ ?

ବା— ନର ତସ୍କର ! ଯେବେ ତୁ ଆମ୍ଭର ବିନାନୁମତିରେ ଅନ୍ତଃପୁରରେ ପ୍ରବେଶକରି ଆମ୍ଭର ପବିତ୍ର କୁଳରେ କଳଙ୍କ ଲଗାଇଛୁ , ତେବେ ତୋର ଶମନର ଆତିଥ୍ୟ ସ୍ୱୀକାର ବିନା ଅନ୍ୟଗତି ନାହିଁ । ରେ ପାଷାଣ୍ଡ ! ଏହି କୃପାଣରେ ତୋର ଶିରଚ୍ଛେଦନ କରିବୁଁ ।

Digitized by srujanika@gmail.com

ଅ— ଅସ୍ତ୍ରବଗଜ ! ଏହୁ ବଜ୍ରସାରନିର୍ମିତ ଦେହ ତୁମ୍ଭ କୃପାଣକୁ ଲକ୍ଷ କରେନାହିଁ । ଯେବେ ରଣକୁଶଳୀଅଛ ତେବେ ବୃଥା ପ୍ରଳାପ କଥାରେ କିକାର୍ଯ୍ୟ ?

ବା—ରେ ପାପିଷ୍ଠ ! ଏହୁକ୍ଷଣି ତୋର ପ୍ରାଣନେବୁ ଆସେ ।
(କିଛୁ ଅନିରୁଦ୍ଧ ସଙ୍ଗେ ଯୁଦ୍ଧରେ ପ୍ରବୃତ୍ତ । କିଛିକାଳା-ନନ୍ତର ଅନିରୁଦ୍ଧକୁ ତଳେପକାଇ ହାଣିବାକୁ କୃପାଣ ଟେକିବା)

କୁ—ମହାରାଜ ! ଏ ଦାସର ଦୋଷ କ୍ଷମାକଲେ ମୁଁ କଥାଏ ନିବେଦନ କରିବି ।

ବା— ଆଚ୍ଛା—କିସ କହ !

କୁ— ମହାରାଜ ! ଏ ଯୁବକ କାହାର ପୁତ୍ର ? ଏହାର ବାସ ସ୍ଥାନ କେଉଁଠାରେ ? କେ ଏଠାକୁ ଆଣିଲା ? ଏ ସବୁ ବିଷୟ ବୁଝି ଏହାକୁ ଦଣ୍ଡଦେବା ଉଚିତ ବୋଧହୁଏ । ଯଦି ଏ ଗାନ୍ଧର୍ବବିଧାନରେ ଶ୍ରୀମୁଙ୍କ କନ୍ୟାଙ୍କ ପାଣିଗ୍ରହଣ କରିଅଛି ତେବେ ଏହାକୁ ବଧକରି ଶ୍ରୀମୁଙ୍କ ଦୁହିତାଙ୍କୁ ବିଧବାକରି ରଖିବା ନିତାନ୍ତ ଅବିଧି । ଏହାର ବଳ, ରଣକୌଶଳ ଦେଖିଲେ ବୋଧହୁଏ ଏ କୌଣସି ଉତ୍ତମ କୁଳଜ ଅଟେ । ଅତଏବ ଏପରି ଲୋକକୁ ବଧକରିବା ଶ୍ରୀମୁଙ୍କପରି ବୀର, ଧୀର, କ୍ଷମାଶୀଳ ମହାନ୍ ଲୋକଙ୍କ ପକ୍ଷେ ଉଚିତନୁହେ । ଏଣୁ ଦାସର ନିବେଦନ ଶ୍ରବଣ କରି ଏହାର ପ୍ରାଣରକ୍ଷା ନିମନ୍ତେ ଅନୁମତି ପ୍ରଦାନକରନ୍ତୁ

ବା— (କ୍ଷଣେଚିନ୍ତି) ଆଚ୍ଛା । ଏ ଦୁରାତ୍ମାକୁ କାରଗୃହରେ ଆବଦ୍ଧକରି ରଖ ।

କୁ— ଯେ ଆଜ୍ଞା ! (ଅନିରୁଦ୍ଧକୁଧରି ପ୍ରସ୍ଥାନ)

(ଯବନିକା ପତନ)



Digitized by srujanika@gmail.com

## ଚତୁର୍ଥାଙ୍କ ॥

[ପ୍ରଥମଦୃଶ୍ୟ]

[ଦ୍ୱାରକା]

[ଶ୍ରୀକୃଷ୍ଣ ଚନ୍ତାଭାବରେ, ବଳରାମ, ସାତ୍ୟକ, ବଭ୍ରୁଥୂ ଓ ଅକ୍ରୁରସହିତ ଉପବିଷ୍ଟ]

ବ— ପ୍ରଭୋ ! ସାମାନ୍ୟ ବ୍ୟକ୍ତିପର କାହିଁକି ଚିନ୍ତାକର ଜବଜମାନ ହୋଇଅଛନ୍ତି ? ଆପଣଙ୍କ ଭୟରେ ଦାନବ ଗଣ ସଚଙ୍କ ଏବଂ ସୁରପତି ଇନ୍ଦ୍ର ଆପଣଙ୍କ କୃପାଛାୟରେ ନିର୍ଭରକରି ସ୍ୱର୍ଗ ସ୍ୱଚ୍ଛନ୍ଦରେ ସ୍ୱର୍ଗରାଜ୍ୟ ପରିପାଳନକରନ୍ତି ଆପଣ କେହିରୁ ଏପରି ଶ୍ରୀମୁଖ ମ୍ଳାନକରିଅଛନ୍ତି ?

କୃ— ବଭ୍ରୁଥୂ ! ଆମ୍ଭ ଚିନ୍ତାର କାରଣ ଏହିଯେ ଯାଦବର ଅନିରୁଦ୍ଧ ବର୍ତ୍ତମାନ ଦ୍ୱାରକାରେ ଦଶୁନାହିଁ ।

ସା— ପ୍ରଭୋ ! ଏଥିକି ଚିନ୍ତା କାହିଁକି ? ଅନ୍ୱେଷଣାର୍ଥେ ଦୂତ ପ୍ରେରଣ କରଯାଉ ।

ବ — ତେବେ ବିଳମ୍ବକରିବା ପ୍ରୟୋଜନକ ? ସତ୍ୱର ରାଜ-କୁମାରଙ୍କ ଅନ୍ୱେଷଣାର୍ଥେ ପ୍ରକାଶ୍ୟ ଓ ଗୁପ୍ତଚରମାନେ ଯାନ୍ତୁ ।

[ଦ୍ୱାରୀର ପ୍ରବେଶ]

ଦ୍ୱା—ମହାପ୍ରଭୋ ! ନାରଦମହାମୁନି ଶ୍ରୀଗୁରୁଙ୍କ ଦର୍ଶନାର୍ଥେ ଦ୍ୱାରପାର୍ଶ୍ୱରେ ଦଣ୍ଡାୟମାନ ଅଛନ୍ତି ।

କୃ— ଶୀଘ୍ରଯାଇ ତାହାଙ୍କୁ ଘେନଅ ।

ଦ୍ୱା—ଯେ ଆଜ୍ଞା (ପ୍ରସ୍ଥାନ)

ଦ୍ୱା— (ନାରଦଙ୍କୁ) ପ୍ରଭୋ । ଭିତରକୁ ବଜେହେନ୍ତୁ ।

ନା— ଅସ୍ତୁ—(କହି ଭିତରକୁ ଯିବା)

Digitized by srujanika@gmail.com

ନା— (ଆନନ୍ଦଗଦ୍ଗଦ ସ୍ୱରରେ) ଭଗବାନ୍ ! ଆଜି ହର୍ଷହୀନ ଏବଂ ଅନ୍ୟମନସ୍କ ହୋଇଥିଲାପରି ବୋଧହୁଏ ।

କୃ— ମହାମୁନେ, ବର୍ତ୍ତମାନ ବତ୍ସ ଅନିରୁଦ୍ଧ ଦୃଷ୍ଟିନାହିଁ ବୋଲି ଶୁଣି ଚିନ୍ତିତଅଛୁ । ସେ କେଉଁଠାରେ ଥିବା ଆପଣଙ୍କୁ ଜଣାଥିବ ତ ?

ନା— ଭଗବାନ୍, ମୁଁ ତାହାଙ୍କ ଶୀଘ୍ରମୁକ୍ତିର ଜଣାଇବା ସକାଶେ ଏଠାକୁ ଆସିଅଛୁ ।

କୃ— ହେ, କେଉଁଠାରେ ଅଛନ୍ତି ?

ନା— ଶୋଣିତାଧିପତି ଦୈତ୍ୟେନ୍ଦ୍ର ବାଣର କାରାଗୃହରେ ବନ୍ଦୀ ହୋଇଅଛନ୍ତି ।

ସମସ୍ତେ— (ଚକିତରେ) ସତ ?

ନା— ଆଉ କଅଣ ଶୁଣୁଛ ?

କୃ— କହନ୍ତୁ ମହାମୁନେ ?

ନା— ପ୍ରଭୋ ! ଶ୍ରବଣକରନ୍ତୁ । ଉଷାନାମ୍ନୀ ବାଣର ଗୋଟିଏ କନ୍ୟାଅଛି । ସେହି ଉଷାଙ୍କ ସହିତ ଅନିରୁଦ୍ଧଙ୍କର ସ୍ୱପ୍ନ ମେଳକ ହୋଇଥିଲା । ଉଷା ତାହାଙ୍କଠାରେ ଅନୁରାଗିଣୀ ହୋଇ ନିରନ୍ତର ଅଧୀର ହୋଇଯାଉଥିଲେ । ଉଷାଙ୍କର ସଖି ଚିତ୍ରଲେଖା ଦ୍ୱାରକାକୁ ଆସି ଅନିରୁଦ୍ଧଙ୍କୁ ସଙ୍ଗେ ନେଇ ଉଷାଙ୍କଠାକୁ ଘେନିଗଲେ । ପରସ୍ପରପ୍ରୀତି ଜାତହେବାରୁ ଅନିରୁଦ୍ଧ ଗାନ୍ଧର୍ବବିଧାନରେ ଉଷାଙ୍କର ପାଣିଗ୍ରହଣ କଲେ । ବାଣ ଏହା ଜାଣିପାରି ଅନିରୁଦ୍ଧଙ୍କ ସହିତ ଯୁଦ୍ଧକରି ପରିଶେଷେ କୃତ୍ରିମଯୁଦ୍ଧରେ ଅନିରୁଦ୍ଧଙ୍କୁ ପାଶରେ ଆବଦ୍ଧକରି ପ୍ରାଣରେ ମାରିବାକୁ ବସିଥିଲା ମାତ୍ର ତାହାର ମନ୍ତ୍ରୀ କୁମ୍ଭାଣ୍ଡର ଉପଦେଶରେ ଦୁରାତ୍ମା ସେପରି ନକରି ଅନିରୁଦ୍ଧଙ୍କୁ କାରାଗାରରେ ବନ୍ଦୀକରିଅଛି

Digitized by srujanika@gmail.com

କୃ— ମୈଶୂପଚନ୍ଦଙ୍କ ପ୍ରସାଦରୁ ତବ ସେ ଏତେ ଦର୍ପାନ୍ଧ ହୋଇ ଅଛୁ ? ହାଡ଼୍ୟକ—ତୁମ୍ଭେ ଦ୍ୱାରକାପୁର ଜାଗ୍ରତରେ ରକ୍ଷା କରୁଥାଅ; ଆମ୍ଭେ ବର୍ତ୍ତମାନ ଯାଇ ସେ ଦୁରମ୍ମାର ଦର୍ପ ଦଳନକରି ଆସିବୁଁ ।

ହା— ଯେ ଆଜ୍ଞା । [ସମସ୍ତଙ୍କର ପ୍ରସ୍ଥାନ]

ନା—[ସ୍ୱଗତ] ଚନ୍ଦ୍ରଲେଖା ଆମ୍ଭଙ୍କୁ ସ୍ମରଣ କଲାକ୍ଷଣି ଆମ୍ଭେ ସକଳବୃତ୍ତାନ୍ତ ଧ୍ୟାନବଳରେ ଜାଣିପାରି ଶ୍ରୀକୃଷ୍ଣଙ୍କ ଆଗରେ ଜଣାଇଦେଲୁଁ । ଏବେ ଆମ୍ଭର ମନସ୍କାମନା ପୂର୍ଣ୍ଣହେଲା ଆଜ ଦୁର୍ବୃତ୍ତ ବାଣର ଦର୍ପ ଗଞ୍ଜନ ହେବ । ଅସ୍ତୁ । ଆମ୍ଭେ ଯାଇ ଶ୍ରୀକୃଷ୍ଣ ବାଣର ଅଦ୍ଭୁତ ଯୁଦ୍ଧକରିବାକୁ ଯିବାର ବାର୍ତ୍ତା ଦେବତାମାନଙ୍କୁ ଓ ପିତା କମଳାସନଙ୍କୁ କହି ଆସିବା ।

(ପ୍ରସ୍ଥାନ ଓ ଯବନିକା ପତନ)

—••❊••—

## ଦ୍ୱିତୀୟ ଦୃଶ୍ୟ ।

[ବାଣ ଓ ଘଣ୍ଟାକର୍ଣ୍ଣ ଆସିନ]

ବା— ଘଣ୍ଟାକର୍ଣ୍ଣ, ଦୁରମ୍ମା କେତେ ସାହସକଲା ? ପାପିଷ୍ଠଲୁ ପ୍ରାଣରେ ବିନାଶକରିବାକୁ ବସିଥିଲୁ । ମାତ୍ର କୁମ୍ଭାଣ୍ଡ ଅନେକ ପ୍ରକାରେ କହିବାରୁ ମନାକରି ତାହାକୁ କାରା-ଗାରରେ ଆବଦ୍ଧ କରିବାକୁ ଆଦେଶ ଦେଲୁଁ । ଦେଖ ! ଦୁରାତ୍ମା କେଉଁ ଦେଶରୁ କପରି ଆସି କେତେ ସାହାସ କର୍ମ କଲା !

ଘ— ଆଜ୍ଞା ଯଥାର୍ଥ ! ତାହାର ସାହସ ଅସାଧାରଣ । ସେଉଁ

Digitized by srujanika@gmail.com

ଭବନରେ ମଶକ ଅଲକ୍ଷରେ ପ୍ରବେଶ କରିପାରେ ନାହିଁ
ସେହି ସ୍ଥଳରେ କି କୌଶଳରେ ସେ ପ୍ରବେଶ କରି
ଗାନ୍ଧର୍ବ ବିଧାନରେ ଯେମା ଉଷାଙ୍କର ପାଣିଗ୍ରହଣ
କରିଅଛନ୍ତି । ଏ ବଡ ଆଶ୍ଚର୍ଯ୍ୟ ଅଟେ ।

[କୁମ୍ଭାଣ୍ଡର ପ୍ରବେଶ]

କୁ—[ନମସ୍କାରକରି] ମହାରାଜ ! ଏ କି ଆଶ୍ଚର୍ଯ୍ୟ ! ଅସମୟରେ
ଯୁଗଳସ୍ତ ଧ୍ୱଜପଟ ଭୋଟହୁଏ ! କାଳାନଳ ସମ
ଜ୍ୱଳ ଅଗ୍ନିଶିଖା ଗଗନପର୍ଯ୍ୟନ୍ତ ଆକ୍ରମଣକରୁଅଛି !
ଝଞ୍ଜାମେଘ ପୁନଃପୁନ ଗମ୍ଭୀରଗର୍ଜ୍ଜନ କରି କର୍ଣ୍ଣ-
କୁହରକୁ ଚମକାଇଦିଏ । ବର୍ଷାଧାରପରି ପ୍ରଜ୍ୱଳିତ
ଉଲ୍କାପାତ ହେଉଅଛି । କି ଭୟଙ୍କର ! ଦେଖନ୍ତୁ !
ହଠାତ୍ ଦେବଦୁନ୍ଦୁଭିର ଧ୍ୱନି ଶୁଭୁଅଛି । ନିଶ୍ଚୟ ଏ
କୌଣସି ଦୁର୍ଦ୍ଦଶାର ପୂର୍ବ ଲକ୍ଷଣ ।

[ଦ୍ୱାରିର ପ୍ରବେଶ]

ଦ୍ୱା— ମହାରାଜ ! ପ୍ରଭୁ ଯାହାଙ୍କୁ କାରାଗୃହରେ ରଖିଅଛନ୍ତି
ସେ ଅନିରୁଦ୍ଧ । କୃଷ୍ଣଙ୍କ ପୌତ୍ର । ତାହାଙ୍କୁ ଆବଦ୍ଧ
କରି ରଖିଥିବା କଥା ଶୁଣି କୃଷ୍ଣ ଓ ବଳରାମ ପ୍ରଭୁଙ୍କ
ଉପରକୁ ଚଢ଼ାଉକରି ଆସୁଅଛନ୍ତି ।

କୁ— ସତେ ?

ଦ୍ୱା— ହଁ ମହାରାଜ !

ବା— କୁମ୍ଭାଣ୍ଡ—ଭୟକରନାହିଁ । ଏତେଦିନକୁ ମହେଶ୍ୱରଙ୍କ
ବର ସଫଳ ହୋଇଅଛି । ଏଥର ଆମ୍ଭ ସମକକ୍ଷ
ଯୋଦ୍ଧା ତୁଲେ ଯୁଦ୍ଧକରି ପରିତୃପ୍ତହେବି । କୁମ୍ଭାଣ୍ଡ !
ଯାହାର ବାହୁବଳରେ ବରୁଣ, କୁବେର, ଯମ, ହୁତାଶନ
ଇତ୍ୟାଦି ଦେବତାମାନେ ପରାଜିତ ଓ ଦେବରାଜ

Digitized by srujanika@gmail.com

ଆଖଣ୍ଡଳ ସର୍ବଦା ସନ୍ତାପିତ ତାହାର କ କୌଣସି କାଳେ କେଉଁ ବୀରଥାସି ଅପମାନ କରପାରବ ? ବୃଥା ଭମ୍ଭ କରନାହଁ । ତୁମ୍ଭେଯାଇ ଗଡ ରକ୍ଷାକରୁଥାଅ । ଆମ୍ଭେ ଯାଇ ଅଚାନ୍ଥକ ଯୋଦ୍ଧାର ଶିରଚ୍ଛେଦନ କର ଅସିବୁ ।

କୁ— ଯେ ଆଜ୍ଞା ।

[ପ୍ରସ୍ଥାନ ଓ ଯବନିକାପତନ]

ତୃତୀୟ ଦୃଶ୍ୟ ।

[ରଣଭୂମି କୃଷ୍ଣ ଓ ବଳରାମ]

ବ— କୃଷ୍ଣ, ଆମ୍ଭର ଇଚ୍ଛାହୁଏ ଆମ୍ଭେ ବାଣରସହିତ ଯୁଦ୍ଧକରବୁ.

କୃ— ଆର୍ଯ୍ୟ ! ଅମ୍ଭେ ମନରେ ସ୍ଥିରକରଅଛୁଁ ଆମ୍ଭେଏକା, ବାଣର ପିପାସା ଶାନ୍ତକରବୁ । ଆପଣ ଅନ୍ୟ ଅସୁର ମାନଙ୍କୁ ବିନାଶକରିବାରେ ପ୍ରବୃତ୍ତହେବେ । ଏପର, କଲେ ଅସୁରବୀରମାନଙ୍କୁ ସହଜରେ ବିନାଶକରୁପାରବା, ଏବଂ ପରସ୍ପର ରକ୍ଷାମଧ୍ୟ କରପାରବା ।

[ନେପଥ୍ୟେ ବାଣର ଘୋର ରଡ]

ବ— କୃଷ୍ଣ, ହେଟି ଦେଖ ! ବାଣ ଘୋରରଡ, କର ଯୁଦ୍ଧକୁ ଆସୁଅଛି; ଆମ୍ଭେମାନେ ସାବଧାନହୋଇ ମାୟୀଯୋଦ୍ଧାର ସହିତ ଯୁଦ୍ଧ କରିବାକୁ ହେବ ।

କୃ— ଆର୍ଯ୍ୟ ! ଗ୍ଧର ବାଣରଲାଗି ଆମ୍ଭେମାନେ ସାବଧାନହେବା, ଅନାବଶ୍ୟକ ।

[ଘଣ୍ଟାକର୍ଣ୍ଣ ଓ ବାଣ ରଡକର ପ୍ରବେଶ]

ବା— ହଇଁ କୃଷ୍ଣ ! ଅଜ କୃତାନ୍ତ ଆସିଅଛେ ସମ୍ମୁଖରେ ଉପସ୍ଥିତ

Digitized by srujanika@gmail.com

ଅଛୁ । ଆଜ ଆଉ ଜୀବନ ଧରି ଦ୍ୱାରକାକୁ ଯାଇ ପାରିବୁନାହିଁ ।

ବ— ରେ ଦୁଷ୍ଟଦାନବ, ବୃଥା ତର୍ଜନ ଗର୍ଜନରେ କି ପ୍ରୟୋଜନ? ଯଦି ଶକ୍ତି ଅଛି ଅଗ୍ରସର ହୁଅ । ଆଜ ଆମ୍ଭ ହସ୍ତରୁ ତୁ ନିସ୍ତାର ପାଇବୁନାହିଁ ।

କୃ— ଆର୍ଯ୍ୟ, କ୍ଷାନ୍ତ ହୁଅନ୍ତୁ । ଆମ୍ଭେ ଏହାର ଦର୍ପ ଚୂର୍ଣ୍ଣ କରିବୁ ।

ବା— ରେ କୃଷ୍ଣ, ଆଜ ତୋର ମାନବଲୀଳା ସମ୍ବରଣ ହେବ ।

କୃ— ରେ ଅସୁରାଧମ, ଥରେ ତୋର ଇଷ୍ଟଦେବଙ୍କୁ ସ୍ମରଣ କରି ଅଗ୍ରସର ହୁଅ ।

ବା— [କ୍ରୋଧରେ] ଆଗ୍ର ! ତିଷ୍ଠାହୁଅ ।

[ବାଣ ଓ କୃଷ୍ଣଙ୍କର; ବଳଦେବ ଓ ଘଣ୍ଟାକର୍ଣ୍ଣର ଯୁଦ୍ଧ । ଘଣ୍ଟାକର୍ଣ୍ଣ ପଳାୟନ, ବାଣର ମୂର୍ଚ୍ଛା ଓ ଶିବଙ୍କ ପ୍ରବେଶ] ।

ଶି— କୃଷ୍ଣ ! ଆମ୍ଭର ପରମଭକ୍ତକୁ ପରାସ୍ତ କରି ଆମ୍ଭଙ୍କୁ ଅପମାନ କରୁଅଛ । ଏ ଅପମାନ ଆମ୍ଭେ ସହ୍ୟ କରିବୁ ନାହିଁ । ବର୍ତ୍ତମାନ ଆସି ଆମ୍ଭ ସଙ୍ଗେ ଯୁଦ୍ଧକର ।

କୃ— ଭଲହୋଇଛି । ଆପଣ କାହିଁକି ଲଣ୍ଡଭଣ୍ଡ ହେବାକୁ ଆସିଲେ ?

ଶି— ବାସୁଦେବ, ଆମ୍ଭର ଭକ୍ତକୁ ପରାସ୍ତ କରି ଆମ୍ଭଙ୍କୁ ଅପମାନ କରୁଅଛ । ଯାହାହେଉ ଥରେ ଆପଣଙ୍କ ପରାକ୍ରମ ଥରେ ଜାଣିବା ।

କୃ— ତେବେ ତତ୍ପରହୁଅ ।

[ଉଭୟେ ଯୁଦ୍ଧରେ ପ୍ରବୃତ୍ତହେବା । ହଠାତ୍ ବ୍ରହ୍ମାଙ୍କ ପ୍ରବେଶ]

ବ୍ର— ମହାଦେବ ! ଏକି ଏକି ? କ୍ରୋଧ ସମ୍ବରଣ କରନ୍ତୁ । ଉମାକାନ୍ତ ଯୁଦ୍ଧରୁ କ୍ଷାନ୍ତହୁଅନ୍ତୁ । ହରିହର ଏକ ଆତ୍ମା

Digitized by srujanika@gmail.com

ଏକମୂର୍ତ୍ତିହୋଇ ଯୁଦ୍ଧକରିବା ବଧିହୋଇନାହିଁ । ତୋତ୍ର ହୁଅନ୍ତୁ ଶାନ୍ତହୁଅନ୍ତୁ ।

[ହିଭଯ୍ରେ ଶସ୍ତ୍ରନକ୍ଷେପକର]

ଶି — ହେ ପୁରୁଷୋତ୍ତମ, ହେ ଲକ୍ଷ୍ମୀକାନ୍ତ ସ୍ଥିପାଳକ କୃଷ୍ଣ ! ଅଜ୍ଞେ ନଜାଣି ଆପଣଙ୍କ ସଙ୍ଗେ ଯୁଦ୍ଧକରିବାକୁ ଉଦ୍ୟତହେଲୁ । ଏ ଆମ୍ଭପକ୍ଷେ ନିତାନ୍ତ ମନ୍ଦକଥା । ଆପଣ ଅଜାତ, ଅନନ୍ତ ନିତ୍ୟ ଏବଂ ସନାତନ । ତ୍ରିଲୋକରେ କେ ଅଛି ଆପଣଙ୍କୁ ପରାସ୍ତ କରିପାରିବ ?

କୃ — ମହାଦେବ ! ଆପଣଙ୍କର କଣ୍ଟ ଦୋଷନାହିଁ । ଅବଶ୍ୟ ଆପଣ ଭକ୍ତକୁ ରକ୍ଷାକରିବାପାଇଁ ସମସ୍ତ ଚେଷ୍ଟା କରୁଥାନ୍ତି ।

ଶି — ଯାହାହେଉ, ଭଗବାନ୍, ବାଣ ଅସୁରଙ୍କ ବା ପୌରୁଷ ହୀନ ଲୋକ ନୁହେ । ମାତ୍ର ସେ ନିତାନ୍ତ ଦର୍ପାନ୍ଧ । ଏହୁ ହେତୁରୁ ସେ ଆପଣଙ୍କଠାରେ ଦୁର୍ବୁଦ୍ଧିକଲା । ଆମ୍ଭର ନିବେଦନ ଏହି ଯେ ତାହାକୁ ମୁମୂର୍ଷୁ ଅବସ୍ଥାରୁ ବଞ୍ଚାଇ ମୁକ୍ତି ପ୍ରଦାନକରନ୍ତୁ ।

କୃ— ଭୋଳାନାଥ ! ଆପଣ ଆପଣଙ୍କ କଥା କେବେ ଅନ୍ୟଥା କରିବୁନାହିଁ । ଆପଣଙ୍କ ସେବକକୁ ମୁମୂର୍ଷୁ ଅବସ୍ଥାରୁ ବଞ୍ଚାଇ ମୁକ୍ତି ପ୍ରଦାନ କରୁଅଛୁ ।

[କୃଷ୍ଣ ବାଣର ମସ୍ତକରେ କର ମାରିବା ଓ ବାଣ ଉଠିବା]

ବା [କରଯୋଡ଼] ହେ ଜଗତ୍ପାଳକ, ମୁଁ ନଜାଣି ଆପଣଙ୍କ ପୌତ୍ରଙ୍କୁ କାରାଗୃହରେ ଆବଦ୍ଧକରି ଆପଣଙ୍କ ସଙ୍ଗେ ଯୁଦ୍ଧରେ ପ୍ରବୃତ୍ତ ହେଲି । ମୋହର ମହାଦୋଷ ହୋଇଅଛି । ହେ କ୍ଷମାଶୀଳ କ୍ଷମାକରନ୍ତୁ । [ଚରଣ ତଳେ ପଡ଼ିବା]

Digitized by srujanika@gmail.com

[ଘଣ୍ଟାକର୍ଣ୍ଣ, କୁମ୍ଭାଣ୍ଡ, ବଳଭଦ୍ର, ଅନିରୁଦ୍ଧ, ଉଷା ଓ ଚିତ୍ରଲେଖାଙ୍କ ସଙ୍ଗେ ବାଣ ପ୍ରବେଶ]

କୁ— [କରଯୋଡ଼ି] ପ୍ରଭୋ ! ଏହି ଆପଣଙ୍କ ପୌତ୍ର ଓ ପୌତ୍ରବଧୂ । ଆମ୍ଭ ମହାରାଜ ନ ଜାଣି ଆପଣଙ୍କଠାରେ ଦୋଷ କରିଅଛନ୍ତି । ଏଣୁ ତାହାଙ୍କୁ କ୍ଷମାକରନ୍ତୁ ।
[ଚରଣତଳେ ପତନ ।]
[କରଯୋଡ଼ି] ଆପଣ ଅମ୍ଭାନଙ୍କଙ୍କୁ କରିବ ଜୟ ?
[କରଯୋଡ଼ି]

ରାଗ ଘଣ୍ଟାରବ ॥ ଅଦତାଳ ।

ହେ ପ୍ରଭୋ ଦେବ ଦମ୍ଭାରି ।
ଯୋଗିବର ଶ୍ରୀହରି ରମାବର ॥ ୦ ॥

ଶ୍ରୀନିକେତନ ଲୋକ ବିଧାତା ।
ହେ ଦେବ ଯାଦବ ଶ୍ରୀଧର ॥ ୧ ॥

ଶ୍ରୀବତ୍ସ ଲାଞ୍ଛିତ କୌସ୍ତୁଭଧାରୀ ।
ହେ ଦେବ ପାପ ତମୋହର ॥ ୨ ॥



ପ୍ରଭୋ ! ମୋହର ପିତାଙ୍କ ଦୋଷ କ୍ଷମାକରନ୍ତୁ ।
[ନମସ୍କାରକରିବା]

କୃ— କୁମ୍ଭାଣ୍ଡ—ଉଷେ—ଚିତ୍ରଲେଖେ—ଆମ୍ଭେ ଏହି ପ୍ରମାଣ କରିଅଛୁ ଯେ ଧର୍ମ ପ୍ରହ୍ଲାଦଙ୍କ ବଂଶରେ ଜନ୍ମଗ୍ରହଣ କରିଥିବା କାହାରିକୁ ନିଜ ହସ୍ତରେ ବଧକରିବୁନାହିଁ । ବାଣ ପ୍ରହ୍ଲାଦଙ୍କ ବଂଶଜ ଅଟେ । ଏଣୁ ଏହାର କେବଳ ଦର୍ପ ଭଞ୍ଜନକରି ପ୍ରାଣରେ ବଞ୍ଚାଇଅଛୁ । ବୋଧହୁଏ

Digitized by srujanika@gmail.com

ଏ ଉତ୍ତମ ଜ୍ଞାନ ପାଇ ଏଣିକ ଆଉ ଗର୍ବ ପ୍ରକାଶ କରିବ ନାହିଁ ।

ଭା—[ଉଷା ଓ ଅନିରୁଦ୍ଧଙ୍କୁ ସମର୍ପଣକର, କରଯୋଡ଼ି]

ଭୁଜଙ୍ଗ ପ୍ରୟାତବୃତ୍ତ ।

ବୃହଦ୍‌ଗୈଣବାହଂ ଭୁଜଙ୍ଗ ବୃତାଙ୍ଗଂ ।
ଉମାଙ୍କଂ ମହୀଶଂ ବୃଷାଙ୍କଂ ମହେଶଂ ।
ଦିନେତ୍ରଂ ଶଧୀଶଂ ତ୍ରିନେତ୍ରଂ ଗିରୀଶଂ ।
ଭଜାମୋ ହରଂତଂ ଭଜାମୋ ହରଂତଂ ।୧।

ସ୍ମରାଙ୍ଗଂ ଦହନ୍ତଂ ପିନାକଂଦଧଂତଂ ।
ଅବନ୍ତଂ ଗଜେନ୍ଦ୍ରଂ ହରନ୍ତଂ ଗଜେନ୍ଦ୍ରଂ ।
ଅଘାରିଂ ପୁରାରିଂ ମଖାରିଂ ଗଣେଶଂ ।
ଭଜାମୋ ହରତଂ ଭଜାମୋ ହରଂତଂ ।୨।

ମହେନ୍ଦ୍ରୋପ-ଲବ୍ଧଂ ସୁଧା-ଧାମ-ଶୋଭଂ ।
ଶିଖାଚନ୍ଦ୍ରବର୍ଦ୍ଧଂ ସ୍ୱନ ମାସ୍ତ୍ରଗର୍ଦ୍ଧଂ ।
ପଦାବ୍ଜୋତ୍‌ଥଗଙ୍ଗଂ ଦୃଗୁତ୍‌ଥାଗ୍ନିଲିଙ୍ଗଂ ।
ଭଜାମୋ ହରଂତଂ ଭଜାମୋ ହରଂତଂ ।୩।

ପିବନ୍ତଂ ଦାବାଗ୍ନିଂ ଜ୍ୱଳନ୍ତଂ ଶଠାଗ୍ନିଂ ।
ଭୁଜଙ୍ଗେ ନଟନ୍ତଂ ପ୍ରଦୋଷେ ରଟଂତଂ ।
ସମୁଦ୍ରେ ସ୍ୱପନ୍ତଂ ମହାଦ୍ରୌ ବସନ୍ତଂ ।
ଭଜାମୋ ହରଂତଂ ଭଜାମୋ ହରଂତଂ ।୪।

ଧରନ୍ତଂଚ ଚକ୍ରଂ ବହନ୍ତଂ ତ୍ରିଶୂଳଂ ।
ବନାନ୍ତେ ଭ୍ରମନ୍ତଂ ଶ୍ମଶାନେ ଚରନ୍ତଂ ।

Digitized by srujanika@gmail.com

ମହେଶ୍ୱରନ୍ତଂ ସନଂତାଭସ୍ମନ୍ତଂ ।
ଭଜାମୋ ହରନ୍ତଂ ଭଜାମୋ ହରନ୍ତଂ ॥ ୫ ॥

ସ୍ତୁବନ୍ତଂ ଚତେର୍ବେଦ୍ୟଂ ଜସ୍ୱନ୍ତଂ ଚିନ୍ମୁଖଂ ।
ଦଦନ୍ତଂ ଚ ମୁକ୍ତିଂ ସ୍ୱଜନ୍ତଂ ଚ ଭକ୍ତିଂ ।
ଶ୍ରୀସ୍ୱାସ୍ଥଂଲଳନ୍ତଂ ଭବାନ୍ୟାଲସନ୍ତଂ ।
ଭଜାମୋ ହରନ୍ତଂ ଭଜାମୋ ହରନ୍ତଂ ॥ ୬ ॥

ଅନନ୍ତ ଶ୍ୱାନଂ ଫଣୀନ୍ଦ୍ରଂ ଦଧାନଂ ।
ନଟନ୍ତଂ ମସରଂ ବସନ୍ତଂ ପୁରାରଂ ।
ସ୍ମରଶ୍ରୀନ୍ଦ୍ରରନ୍ତଂ ଦଗନ୍ତମ୍ବରନ୍ତଂ ।
ଭଜାମୋ ହରନ୍ତଂ ଭଜାମୋ ହରନ୍ତଂ ॥ ୭ ॥

ହରଂ ବିଷ୍ଣୁ କୃଷ୍ଣଂ ଶିବଂ ଶମ୍ଭୁଚନ୍ଦ୍ରଂ ।
ଜଗନ୍ନାଥମୀଶଂ ଭବଂ ବିଶ୍ୱନାଥଂ ।
ଭଜନ୍ତଂ ସଦା ପାଦପଦ୍ମାଶ୍ରିତଂ ତଂ ।
ଭଜାମୋ ହରନ୍ତଂ ଭଜାମୋ ହରନ୍ତଂ ॥ ୮ ॥



[ଓତନକ୍ଷାଚଲନ]




Digitized by srujanika@gmail.com